# ରବି ସିଂ

* 

# ରଚନା-ସମ୍ଭାର

# ପଥପ୍ରାନ୍ତ କବିତା

ରବୀନ୍ଦ୍ରନାଥ ଠାକୁର

ପ୍ରକାଶକ :
କେ. ମହାପାତ୍ର ଏଣ୍ଡ୍ କୋଂ
ଛାତ୍ରସାଥୀ ଅଫିସ
ବମିରୌଡ଼ : କଟକ—୧

"PATHAPRANTARA KABITA"

POEMS BY

Rabindranath Singh.

Second Edition : 1970

Rs. 5/-



# ।। ପଥପ୍ରାନ୍ତର କବିତା ।।

ଲେଖକ :

ରବୀନ୍ଦ୍ରନାଥ ସିଂହ

।। ଦ୍ୱିତୀୟ ପରିବର୍ଦ୍ଧିତ, ପରିମାର୍ଜିତ,

ସଂଶୋଧିତ ସଂସ୍କରଣ :

୧୯୭୦



।। ପ୍ରକାଶକ :

କେ. ମହାପାତ୍ର ଏଣ୍ଡ କୋଃ

ଗ୍ରନ୍ଥସାଥୀ ଅଫିସ

କମିରୋଡ଼ : କଟକ – ୨

।। ପ୍ରଚ୍ଛଦ :

ଶ୍ରୀ ଗଦାଧର ସ୍ୱାଇଁ

।। ମୁଦ୍ରଣ :

ପ୍ରକାଶ ପ୍ରିଣ୍ଟର୍ସ

ରାଜାବଗିଚ୍ଚା : କଟକ – ୯

।। ମୂଲ୍ୟ :

ପାଞ୍ଚଟଙ୍କା ମାତ୍ର

# ଗ୍ରନ୍ଥ

# ସୂଚୀ






ଆଦି ମଉସା !

★ ୧୯୪୭ ସାଲର କଥା ସିଏ । ସ୍ୱାଧୀନତା-ସଂଗ୍ରାମର ସଙ୍କ-ଶିଖାରେ (୧୯୨୧—୧୯୪୭) ମୋର ସମସ୍ତ ପାରିବାରିକ ସ୍ୱଚ୍ଛଳତା ପୋଡ଼ି ପାଉଁଶ ହୋଇ ତାର ଅବଶେଷ ଭାବରେ ଥିଲେ ମୋର ଭଣ-କ୍ଲାନ୍ତ ବାବା ଆଉ ମା । ସେମାନଙ୍କର ଅକାଳ ମୃତ୍ୟୁ ପରେ ଆତ୍ମୀୟ ସ୍ୱଜନଙ୍କ ଅମାନୁଷିକ ଅତ୍ୟାଚାରରେ ଅସହାୟ ଶୋକା-ଛନ୍ନ ଅନାଥ ବାଳକ ମୁଁ ···ହଠାତ୍ ଏକ ତମସାଛନ୍ନ ବର୍ଷଣମୁଖର ମଧ୍ୟରାତ୍ରିରେ ଗୃହତ୍ୟାଗୀ ହୋଇ ପାଦ ଦେଇଥିଲି ପୃଥିବୀର ପଥପ୍ରାନ୍ତରେ—ଜଗତ୍‌ସିଂହପୁର ଥାନାର ନବାପାଟଣା ଗାଁରୁ କଟକ ସହର ପର୍ଯ୍ୟନ୍ତ ଦୀର୍ଘ ୨୭।୨୮ ମାଇଲ୍ ବାଟ ପାଦରେ ଚାଲି ଚାଲି, ଦେହରେ ୧୦୨ ଡିଗ୍ରୀ ଜର ନେଇ ଯେତେବେଳେ ଆସି ଠିଆ ହେଲି କଟକ ରେଲ୍‌ୱେ ଷ୍ଟେସନର ମୁସାଫିର୍‌ଖାନା ବୁକୁରେ, ସେତେବେଳକୁ ତହିଁଆରଦିନ ଅପରାହ୍ନ ପ୍ରାୟ ! ୪ ଦିନ ଧରି ଠେଙ୍ଗା ଉପାସ, ଦେହ ଚାହୁଁଥିଲା ବିଶ୍ରାମ । ବୟସ ସେତେବେଳେ ମୋର ବା'ର କି ତେ'ର ! କିଛି ଅବଲମ୍ବନ ତ ଦରକାର ଜୀବନ ଧାରଣ ପାଇଁ ! ବାଧ୍ୟ ହୋଇ ସେହି ଅବସ୍ଥାରେ

ସେଦିନ ଆଦର ନେଇଥିଲି ଯାତ୍ରୀଙ୍କର ମାଲପତ୍ର ବୋହିବା କାର୍ଯ୍ୟ । ତିନି ଦିନ ଭିତରେ ଗାଏମୋଟ୍ ରୋଜଗାର କରିଥିଲି ତିନି-ଟଙ୍କା ବାରଅଣା । ସେଥିରୁ ତିନିଟଙ୍କା କୁଆଡ଼େ ହଜି ଯାଇଥିଲା ! ମୋର 'କୁଲି' ଜୀବନର ୪ର୍ଥ ଦିନ ସଂଧ୍ୟାରେ କଷ୍ଟେ ମଟେ ଜଣେ ମାରୁଆଡ଼ୀ ରେଳ ଯାତ୍ରୀର ବିରାଟ ଏକ ଟ୍ରଙ୍କ୍‌କୁ ନେଇ ଥୋଇଲି ଗାଡ଼ିରେ । ଥୋଇବା ପରେ ପରେ ଗାଡ଼ିର ଚକ ଧୀରେ ବୁଲିବାକୁ ଆରମ୍ଭ କଲା । ମୁଁ ହାତ ବଢ଼ାଇ ଯାତ୍ରୀଟିକୁ ମାଗିଥିଲି ମୋର ପାରିଶ୍ରମିକ ମିରବରେ; କିନ୍ତୁ ପାଇଥିଲି ବିନା କାରଣରେ ପ୍ରଚଣ୍ଡ ଗୋଟାଏ ଗୋଇଠା । ଖସି ପଡ଼ୁଥାନ୍ତି ଚଳନ୍ତା ଗାଡ଼ିର ଘୂର୍ଣ୍ଣିକଶୀଳ ଚକର ସାମ୍ନାରେ—ସେଇଦିନ ସବୁ ଶେଷ ହୋଇ ଯାଇଥାନ୍ତା । ଗାଡ଼ି ଷ୍ଟେସନରୁ ଅପସରି ଗଲା ପରେ ମଣିଷ ପ୍ରତି, ମଣିଷସମାଜ ପ୍ରତି ଗୋଟାଏ ତୀବ୍ର ଘୃଣାରେ ମୁଁ ସେଦିନ କାନ୍ଦି ଉଠିଥିଲି ଅତି ଅସହାୟ ଭାବରେ—ମୋର ସେଦିନର ସେହି ଅନାଥ-ଆଖିର ଅଶ୍ରୁବିନ୍ଦୁ ଯେଉଁ ସ୍ଥାନରେ ଝରି ପଡ଼ିଥିଲା ସେ ସ୍ଥାନଟି ଆଜି ବି ମୋର ସ୍ପଷ୍ଟ ମନେ ଅଛି ।

★ ସେଦିନ ରାତିରେ ଷ୍ଟେସନରୁ ଲକ୍ଷ୍ୟହୀନ ଭାବରେ ବାହାରି ମୁଁ ଆସି ପହଞ୍ଚିଥିଲି ଟାଉନ୍‌ହଲ୍‌ର ବାରଣ୍ଡାରେ, ଏକା-ଧିକ କୁଷ୍ଠରୋଗୀଙ୍କ ମେଳରେ ତମ ସହିତ ସେଦିନ ମୋର ହୋଇ-ଥିଲା ପ୍ରଥମ ସାକ୍ଷାତ ଏବଂ ପରିଚୟ ।

★ ଆଦିକନ୍ଦ ରଉଳ—ମୁଁ ଡାକୁଥିଲି "ଆଦି ମଉସା" । ତମେ ଥିଲ ଏ ନୈତିକ-କୁଷ୍ଠରୋଗଗ୍ରସ୍ତ ଅର୍ଥସର୍ବସ୍ୱ ନପୁଂସକ ସମାଜରେ ମଣିଷ ପରି ମଣିଷଟିଏ । ମୋର ବୟସର ଏକମାତ୍ର ଭେଣ୍ଡା ପୁଅ ତମର, ହଇଜାରେ ସିଏ ମରିଥିଲା, ସ୍ତ୍ରୀ ମଧ୍ୟ ମରି-ଥିଲା ତା ଆଗରୁ, ଘର ଡିହକୁ ତମର ଗାଁ ଲୋକେ ଦଖଲ କରି ନେଇଥିଲେ ଜବରଦସ୍ତ । ପୁତ୍ରଶୋକରେ ଶେଷରେ ତମେ ହରାଇ ବସିଲ ତମର ଆଖି ହଳକ । ତମ କହିବା ମୁତାବକ, ମୋର କଣ୍ଠସ୍ୱର

କୁଆଡ଼େ ଠିକ୍ ତମ ମଲା ପୁଅର କଣ୍ଠସ୍ୱର ପରି ଥିଲା ! ସେଇଥି-ପାଇଁ ବୋଧହୁଏ ମୋର ଚେହେରା ନ ଦେଖି ମଧ୍ୟ ମୋ ଉପରେ ତମେ ଢାଳି ଦେଇଥିଲ ତମ ହୃଦୟ-ପାତ୍ରର ସମସ୍ତ ମାନବିକ-ଶ୍ରଦ୍ଧା । ମୋ ପ୍ରତି ତମର ଆଦରର ଡାକ ନାମ ଥିଲା "ବୁଲା" ।

☆ ଦିନମାନ ଅକାରଣ କଟକ ସହର ପରିକ୍ରମା ସାରି ମୁଁ ଯେତେବେଳେ ରାତି କଟାଇବା ପାଇଁ ଫେରିଆସୁଥିଲି ଟାଉନ୍-ହଲର ବାରଣ୍ଡାକୁ, ଏ ବିରାଟ ପୃଥିବୀରେ ତମେହିଁ ସେତେବେଳେ ଏକମାତ୍ର ମଣିଷ, ଯିଏ କି ମତେ କୋଳକୁ ଟାଣିନେଇ, ମୁଣ୍ଡରେ ହାତ ବୁଲାଇ ନିଜର ଭିକ୍ଷାର୍ଜିତ ଅର୍ଥରୁ କିଛି ଦେଇ କହୁଥିଲ, "ଯା, କିଛି ଖାଇଦେଇ ଆ !"

☆ ମୋର ସକରୁଣ କଠୋର ଅନାଥ-ଜୀବନଯାତ୍ରା ସଂପର୍କରେ ତମେ ପୂର୍ଣ୍ଣ ଅବହିତ ହେଲାପରେ ମୋତେ ଦେଇଥିଲ ଏକ ନିଯୁକ୍ତି । ତାହା ହେଲା, ପ୍ରତିଦିନ ମୁଁ ତମକୁ ନେଇ କଟକ କଲେକ୍‌ଟରଏଟ୍ କଚେରୀ ଦ୍ୱାରରେ ଛାଡ଼ିଦେଇ ଆସିବି ଆଉ ସଂଧ୍ୟା ପୂର୍ବରୁ ତମକୁ ନେଇ ଆସିବି ଟାଉନ୍‌ହଲ ବାରଣ୍ଡାକୁ । ତମେ ସେଥିପାଇଁ ପ୍ରତିଦିନ ମୋତେ ଦେବ ଛଅଣା କିମ୍ବା ପଇସା । ତାହାହିଁ ହୋଇଛି—ଏହିପରି ବିତିଛି ପ୍ରାୟ ୪ ମାସ କାଳ !

☆ ଦିନେ— !

☆ ନିଜ ଗାଁକୁ କାହିଁକି ଚାଲିଗଲି, ଜାଣେନା । ଫେରିବାକୁ ବିଳମ୍ବ ହୋଇଥିଲା ମାତ୍ର ୨ଟିଦିନ । ଯେଉଁ ଦିନ ଫେରେ, ସେଦିନ ରବିବାର···ଦିନ ପ୍ରାୟ ୨ଟା, ଟାଉନ୍‌ହଲ ପାଖକୁ ଆସି ଦେଖିଲି ତମେ ନାହିଁ । ମ୍ୟୁନିସିପାଲଟି ପୋଖରୀ କଡ଼ରେ ଅସଂଖ୍ୟ ମଣିଷର ଭିଡ଼ । କଥା କ'ଣ ? ଭିଡ଼ ଠେଲି ଦେଖିଲି, ତମର ସେହି ବଙ୍କୁଲି ବାଡ଼ି, ପୁରୁଣା ମଇଳା କୋଟ୍,ଛିଣ ଡବା—ସବୁ ବିପର୍ଯ୍ୟସ୍ତ ହୋଇ ପଡ଼ିଛି ଆଉ ତମର ଶବ ଭାସୁଛି ପୋଖରୀ ମଝିରେ । ଆଜିପରି ସେଦିନ ମୋର ଯଦି କବିତ୍ୱ ଥାନ୍ତା, ତାହେଲେ ମୁଁ ଲେଖିଥାନ୍ତି :

ହେ ନପୁଂସକ କର୍ଣ୍ଣଙ୍କ ତର ଅନାବୃତ ସୂର୍ଯ୍ୟ,

ହେ ପତମାନ ଗଳତ ଆକାଶ,

ଆସ, ଓହ୍ଲେଇ ଆସ !

ଏ ଧୂଳି-ମଳିନ ପୃଥିବୀର ଅଭିଶପ୍ତ ମୃତ୍ତିକା ଉପରକୁ !

ହେ ସାଗର-ମେଖଳା, ମୌନା, ଦଣ୍ଡିତା-ପୃଥ୍ୱୀ,

କାଳ୍ପନିକ "ସ୍ୱର୍ଗ"ର ଦାସୀ ହୋଇ ଆଉ ରହିଥିବୁ

କେତେକାଳ ?

ଉଠ୍ ! ଜାଗ୍ରତ ହ !

★ କିନ୍ତୁ ନା, ମୁଁ ସେଦିନ ହରାଇଥିଲି ମୋର ଭାଷା ।

★ ୨୪ ବର୍ଷ ତଳର ସେ ମର୍ମାନ୍ତିକ ଆଘାତ ଓ ଦୃଶ୍ୟ କାଲିଠାରୁ ଲାଗେ । ତମେ ଯଦି ଜୀଇଥାନ୍ତ ଆଦି ମଉସା, ଆଜି ମୋର ବିପ୍ଳବୀକର ସାରସ୍ୱତ-ସାଫଲ୍ୟରେ ତମେହିଁ ହୋଇଥାନ୍ତ ଏକାନ୍ତ ସୁଖୀ ।

★ ବିପ୍ଳବର ଅଗ୍ନିମୟ ପଥରେ ମୁଁ ଆଜି ହରାଇ ବସିଛି ମୋର ସବୁକିଛି ପାର୍ଥିବ-ସମ୍ବଳ । କେବଳ ପୈତୃକ-ପ୍ରାଣଟି ଛଡ଼ା ତମକୁ ଦେବା ପାଇଁ ମୋ ଭଣ୍ଡାରରେ ଅଛିବା କଅଣ ?

★ ଏହି ପଥପ୍ରାନ୍ତର କାବ୍ୟାର୍ଘ୍ୟ ତମରି ମହାନ୍-ମନୀଷାର ବେଦୀରେ ଥୋଇ ତମଠାରୁ ଋଣମୁକ୍ତ ହେବାର ଦୁଃସାହସ କରିବା ସଂଗେ ସଂଗେ ତମକୁ ପ୍ରଣାମ କରୁଛି ।

। ଇତି ।

ତମରି ସେହି

"ବୁଲ୍"

‘ପଥପ୍ରାନ୍ତର କବିତା’ର
ଉତ୍ସଭୂମି
ଓ
ମୋର ସାଂସ୍କୃତିକ ପରିବେଶ
॥ ୧ ॥

୧/୪, ଲେବର କଲୋନି
ରାଜାବଗିଚା, କଟକ
୧ ଅଗଷ୍ଟ : ୧୯୭୦
ମଣି ଭୋଇ

ଗୋଟିଏ ସାଇର କୁକୁର ଦୈବାତ୍ ଅନ୍ୟ ସାଇକୁ ଚାଲିଗଲେ ସେ ସାଇର କୁକୁରମାନେ ଯେପରି ହଠାତ୍ ତାକୁ ଘେରିଯା’ନ୍ତି, ଆଉ ବିଚରା ଅସହାୟ ଜୀବଟି ନିଜର ଲାଙ୍ଗୁଡ଼କୁ ଦୁଇ ପଛଗୋଡ଼ ମଝିରେ ଜାକି ଯେପରି ସଙ୍ଗଠିତ ଆକ୍ରମଣକୁ ସହ୍ୟକରେ ନୀରବରେ, ରାଜନୀତି କ୍ଷେତ୍ର ପରିତ୍ୟାଗ କରି ଓଡ଼ିଆ ସାହିତ୍ୟ ଇଲାକାକୁ ପ୍ରବେଶ କଲାବେଳେ ମୋର ଅବସ୍ଥା ହୋଇଥିଲା ତାଠାରୁ ଅଧିକ ଶୋଚନୀୟ ।

ଏ ଗ୍ରନ୍ଥ ସନ୍ନିବେଶିତ କବିତାଗୁଡ଼ିକର ଜନ୍ମଲଗ୍ନ ଯେତିକି ଦୁଃଖାବହ, ଯେତିକି ଅଶ୍ରୁଳ, ସେତିକି ଜ୍ୱାଳାମୟ, ସେତିକି ତାପଦଗ୍ଧ ଓ ସକରୁଣ ।

ମୋର କାବ୍ୟର ଜୟରଥ ଆରୋହଣ ମୋ ପାଖରେ ତ ଏକ ବିସ୍ମୟ, ପରନ୍ତୁ ସେଥିପାଇଁ ଦାୟୀ ମୋର ପ୍ରଗତି ପଥରେ ମାନବସୃଷ୍ଟ ବାଧା, ମୋ କବିତ୍ୱର ବିକାଶ ବିରୁଦ୍ଧରେ ପାଞ୍ଚୋନ୍ମୁଖ ସାମାଜିକ-ଷଡ଼ଯନ୍ତ୍ର (Social-Conspiracy), ଈର୍ଷା, ନିନ୍ଦା, ଅହେତୁକୀ ଅକାରଣ କୁତ୍ସା । ଅତ୍ୟନ୍ତ ଲୋମହର୍ଷକ ସେ ସବୁର କାହାଣୀ ।

୧୯୫୬ ସାଲର ସେପ୍ଟେମ୍ବର ମାସ···ଘାତକର ଯୂପକାଷ୍ଠ କବଳରୁ ଦୈବାତ୍ ଖସି ପଳାଇ ଆସିଥିବା ପଶୁପରି ମୁଁ ଖସି ପଳାଇ ଆସିଥିଲି ସୋସଲିଷ୍ଟ ଦଳର ଅର୍ଗଳରୁ ।

କଟକ ଜିଲ୍ଲାର ଆଠଗଡ଼ ସବ୍‌ଡିଭିଜନର ଖୁଣ୍ଟୁଣୀ ବଜାରର ଗୋଟିଏ ଚା ଦୋକାନର କାଠବେଞ୍ଚ୍ ଉପରେ ବସିରହି ମୁଁ ସେତେବେଳେ ସ୍ମରଣ କରିଥିଲି ୧୯୪୭—୧୯୫୨ ଖ୍ରୀ ଦୀର୍ଘ କେତେଟା ବର୍ଷର ମୋର ନିବିଡ଼ ଜନସମ୍ପର୍କ, ଦୁଃଖଦାୟୀ ଅତୀତ ଏବଂ ଆଜିର ଜ୍ୱାଳାମୟ ବୌଦ୍ଧିକ ଭବିଷ୍ୟତକୁ ।

ପାଦ ବଢ଼ାଇଥିଲି ଆଗକୁ ।

ତାପରେ ବହୁ ଜଣା-ଅଜଣା ସ୍ଥାନ, ଅସଂଖ୍ୟ ବାଟୋଇମାନଙ୍କ ସହିତ ହୋଇଥିଲି ପରିଚୟ । ଅଗଣିତ ଅପରିଚିତ ଗୃହସ୍ଥର ବାରଣ୍ଡା, କଟକ ରେଲୱେ ଷ୍ଟେସନର ମୁସାଫିର ଖାନାଠାରୁ ଆରମ୍ଭ କରି କଟକ ସହରର ଗଳି-କନ୍ଦଳିରେ ମୁଁ ସେତେବେଳେ ବର୍ଷ ବର୍ଷ ଧରି ରାତି କଟାଇଥିଲି ।[ମାସ ମାସ ଧରି ଭାତ ନ ଖାଇ, ବରା-ପିଆଜି ଖାଇ, ଅର୍ଦ୍ଧାହାର-ଅନାହାର, ଗଭୀର ହତାଶାରେ ଉଦ୍‌ଭ୍ରାନ୍ତ ହୋଇ ଏକ କକ୍ଷଚ୍ୟୁତ ଧୂମକେତୁ ପରି ମୁଁ ଘୂରି ବୁଲୁଥିଲି—ଟିକେ ସ୍ନେହ, ଆଦର, ଆଶ୍ୱାସ, ଆଶ୍ରୟ, ହୃଦ୍ୟତା ଏବଂ ଆଲୋକର ଭିକ୍ଷାର୍ଥୀ ହୋଇ । ସେହି ଘୂର୍ଣ୍ଣିର ଭିତରେ ବାଟୋଇର ଚକ୍ରମାନନ, ମଣିଷର ଅକାରଣ ଘୃଣା, ଆଶ୍ରୟ ବଦଳରେ ଆକ୍ରମଣ, ଶ୍ରଦ୍ଧା ବଦଳରେ ପଦାଘାତ—ଏସବୁ ଥିଲା ମୋର ଚିର ସହଚର ।]

ସେତେବେଳେ ଯେଉଁ ଯେଉଁ ସ୍ଥାନମାନଙ୍କରେ ଏ ଗ୍ରନ୍ଥ ସନ୍ନିବେଶିତ କବିତାମାନ ରଚନା କରିଥିଲି, ସେ ସବୁ ସ୍ଥାନମାନ ହେଲେ—ଢେଙ୍କାନାଳର କାରାଗାର, କଟକ ଟାଉନ୍‌ହଲର ବାରଣ୍ଡା, ରେଲୱେ ଷ୍ଟେସନ୍, ଦରଘାବଜାରସ୍ଥ ତତ୍କାଳୀନ ଡାକ୍ତର ପି. ପରିଜାଙ୍କ "ପାୟୋନିୟର କ୍ଲିନିକ୍"ର ଆଲମିରା ପଛପଟ, ଶ୍ରୀଯୁକ୍ତ ରଘୁନାଥ ଦାସ ଆଡ୍‌ଭୋକେଟ୍‌ଙ୍କ ବାସଗୃହ, "ନିଆଁ ଖୁଣ୍ଟା" ଅଫିସ, କୁମ୍ଭଖାଇ ଗଳିର ପୂତିଗନ୍ଧମୟ ଗୋଟିଏ ଭଡ଼ାଘର । ଏ ସ୍ଥାନମାନଙ୍କ ଭିତରେ ସବୁଠାରୁ ସ୍ମରଣୀୟ ହେଲା, କଟକ ଭିକ୍ଟୋରିଆ ସ୍କୁଲ ସନ୍ନିକଟ କୁମ୍ଭଖାଇ ଗଳିର ସେଇ ଘର ବଖରାକ । ମାସିକ ପାଞ୍ଚଟଙ୍କା ଭଡ଼ା । ଘର ମାଲିକ ଲକ୍ଷ୍ମଣ ବେହେରା (ବର୍ତ୍ତମାନ ମୃତ) । ଘରଟିର ମାଟିକାନ୍ଥ—ଛାଳଟା ସନ୍ତସନ୍ତିଆ, ବର୍ଷା ରାତିରେ ଛଲୁଣି ଛିଦ୍ରରୁ ପାଣି ଗଳିଲା ପରି ଗଳେ ପାଣି । ଘର ଭିତରେ ଥିଲା ହାତଟଣା ରିକ୍‌ସାର ଦୁଇଟା ଛିଣ୍ଡା ଗଦି—ସିଏ ମୋର ତକିଆର କାର୍ଯ୍ୟ କରୁଥିଲା । ସମ୍ପଦ ଭିତରେ ମୋର ଥିଲା, ଝଣ୍ଡେ ଭଙ୍ଗା ଟିଣ ସୁଟ୍‌କେଶ, କିଛି କାଗଜପତ୍ର, ଗୋଟାଏ ଆଲମୋନିୟମର ଫୁଟା ଡାଲା, ଡିବିରିଟିଏ, ଖଣ୍ଡେ ପରୁଡ଼ା ମସିଣା (ତାହା ପୁଣି ଘର ମାଲିକ ଦେଇଥିଲା ଦୟାପରବଶ ହୋଇ ।) ସଙ୍ଗା ଉପରେ ଥିଲା ଘୋଡ଼ାଗାଡ଼ିର ପୁରୁଣା ଗୋଟାଏ ଚକ—ତା ଉପରେ ଥିଲା ଚିରା ଅଖା ବୋଝେ ।

ତା ଭିତରେ ବାସକରୁଥିଲା ଅନ୍ୟ ଏକ ପ୍ରାଣୀ—ବୁଢ଼ୀ ଜମଣା ସାପଟିଏ । ୧୯୫୭ ସାଲର ବର୍ଷାକାଳଟି ଏଇ ଘର ବଖରାକରେ ଅପାଂକ୍ତେୟ ଭାବରେ ଜୀବନ ବିତୁଥିଲା । ଏଇଠି ଡିବିରିର ନିଷ୍ପନ୍ଦ ହଳଦିଆ ଆଲୁଅରେ ନଇଁପଡ଼ି ମୁଁ ରଚନା କରିଥିଲି ମୋର "ଗୋଆଯାତ୍ରୀ" ପୁସ୍ତକ, କେତୋଟି କ୍ଷୁଦ୍ରଗଳ୍ପ, ଏବଂ ଏଥିର କବିତାମାନ । ୧୯୫୭ ସାଲର ଜାନୁଆରୀ ତା୩୦ରିଖ ପର୍ଯ୍ୟନ୍ତ ଏଇ ଘର ବଖରାଟି ଥିଲା ମୋର ଅକୃତ୍ରିମ ଆଶ୍ରୟଦାତା ।

ସେହି ବିଗତ ଯନ୍ତ୍ରଣାମୟ ଲୋତକାପ୍ଳୁତ ଦିନଗୁଡ଼ିକରେ ଅତ୍ୟନ୍ତ କଷ୍ଟରେ ମୁଁ ଅଗ୍ରସର ହେଉଥିଲାବେଳେ ପୁସ୍ତକ ପ୍ରକାଶକ କହୁଥିଲେ, "ବହିଲେଖା ଛାଡ଼ି ମାଟି ବୁହ" । ଜଣେ ପ୍ରତିଷ୍ଠିତ ଲେଖକ ଓ ସାମ୍ପାଦକ ତ କହିଥିଲେ "ତମେ ଯଦି କବିତା ଲେଖିବ, କବିତା ଲେଖିବା ଲୋକ କ'ଣ ଗାଧୋଇ ପିଇବେ ?" ଏହିସବୁ ବଜ୍ର-ବିଦ୍ୟୁତ୍-ମୁଖରିତ ବର୍ଷ, ଦିନ, ମୁହୂର୍ତ୍ତଗୁଡ଼ିକ ଥିଲା "ପଥପ୍ରାନ୍ତର କବିତା"ର ଜନ୍ମଲଗ୍ନ ଆଉ ତାର ପ୍ରବଳ ପ୍ରସବ-ବେଦନାରେ ଫାଟି ପଡ଼ୁଥିଲା ମୋ ମସ୍ତିଷ୍କର ସମସ୍ତ ତନ୍ତ୍ରୀ । ପ୍ରଥମେ 'ଓଡ଼ିଶା ବୁକ୍‌ଷ୍ଟୋର'ର ସ୍ୱତ୍ତ୍ୱାଧିକାରୀ 'ପଥ-ପ୍ରାନ୍ତର କବିତା'ର ପ୍ରକାଶନ ଦାୟିତ୍ୱ ବହନ କରି ମୋର ଚିର ସ୍ମରଣୀୟ ହୋଇଛନ୍ତି । ୧୯୪୭—୧୯୫୨, ୧୯୫୨—୧୯୫୯ ଏହାରି ଭିତରେ ଜନଜୀବନର ଅତ୍ୟନ୍ତ ଗଭୀରତାରୁ ମୁଁ ଯେଉଁ ଚିତ୍ରାନ୍ତ ପାଥେୟ ସଂଗ୍ରହ କରିଥିଲି, "ପଥପ୍ରାନ୍ତର କବିତା" ତା'ର ସ୍ୱାକ୍ଷୀ । ଏହାହିଁ ମୋତେ ମୋର ଲକ୍ଷ ଲକ୍ଷ ଜଣା-ଅଜଣା ପାଠକ-ପାଠିକାଙ୍କ ସହିତ ଯୋଗସୂତ୍ର ସ୍ଥାପନ କରାଇବାରେ ସାହାଯ୍ୟ କରିଥିଲା । ଏ ପୁସ୍ତକର ପ୍ରଥମ ସଂସ୍କରଣ ପାଇଁ ଲେଖକ ହିସାବରେ ଯଦିଚ ମୁଁ ପ୍ରକାଶକଙ୍କଠାରୁ ମୋର ପାରିଶ୍ରମିକ ବାବଦକୁ ପାଇଥିଲି ସର୍ବମୋଟ ୬୨ ଖଣ୍ଡ 'ପଥପ୍ରାନ୍ତର କବିତା' ପୁସ୍ତକ; ତଥାପି ପାଠକ ଦରବାରରୁ ମୁଁ ଏଥିପାଇଁ ପାଇଛି ଅସୀମ ଶ୍ରଦ୍ଧାର ଜୟମାଳ୍ୟ ।

ମୋର ଏକକ ଆଗ୍ନେୟ କାବ୍ୟସାଧନା ମୃଗାଧିକ ହୋଇଗଲାଣି । ଏଥିଭିତରେ ମୋ ସାଧନାର ପବିତ୍ର ବେଦୀ ଉପରେ ଆଣି ଅଜାଡ଼ି ଦିଆଯାଇଛି ଯଥେଷ୍ଟ ଆବର୍ଜନା, ନିକ୍ଷେପିତ ହୋଇଛି ଅସଂଖ୍ୟ ଲୋଷ୍ଟ୍ର, ମୋର ପ୍ରତିଭାର କଂଠରୁଦ୍ଧ ପାଇଁ ଉନ୍ମୋଚିତ ହୋଇଛି ନୂଆ ନୂଆ ଷଡ଼ଯନ୍ତ୍ରର କୁଟିଳ ଆଉ କରୁଣ ଅଧ୍ୟାୟ । ସେ ଅଧ୍ୟାୟମାନଂକର ପାଶବିକ ନଗ୍ନତା ଆଜି ଓହ୍ଲେଇ ଆସିଛି ମୋର ପରିବାର, ଶିଶୁ ସନ୍ତାନ ଏବଂ ମୋର ଶୀର୍ଣ୍ଣ ରକ୍ତ-ମାଂସର ଦେହକୁ କ୍ଷତ-ବିକ୍ଷତ କରିବା ପାଇଁ । ଏ ସବୁ କର୍ମକାଣ୍ଡର ବିଦ୍ଧାଣୀବର୍ଗ ହେଲେ ମୋର ପ୍ରତିଭାର ନବ-

ନବ ସାଫଲ୍ୟରେ ଈର୍ଷା-ଜର୍ଜରିତ, ଦୀର୍ଘକାଳରୁ ମୋର ବୌଦ୍ଧିକ ଆଘାତରେ ଆହତ, ମୃତ, ଆକ୍ରାନ୍ତ, ଅପଦସ୍ଥ, ପରାଜିତ ତଥା ବିଧ୍ୱସ୍ତ ସାହିତ୍ୟିକ-ପ୍ରତିଦ୍ୱନ୍ଦ୍ୱୀ । ସେମାନଙ୍କ ପଛରେ ତାଙ୍କର ଭାଇ-ବିରାଦର ଯଥା: ପାନ ଦୋକାନୀ, ପୁଲିସ କର୍ମଚାରୀ, ସଂଗୀତଜ୍ଞ, ନଟ, ରାଜକୁମାର, ନାରୀବ୍ୟବସାୟୀ, ହୋଟେଲ ମାଲିକ, କଣ୍ଟ୍ରାକ୍ଟର, ମଦ୍ୟପ, ପ୍ରତିକ୍ରିୟାଶୀଳ ସାଂପ୍ରଦାୟିକ ରାଜନୈତିକ ଦଳର ସମର୍ଥକ ଅଣଓଡ଼ିଆ ବ୍ୟକ୍ତି କେତେଜଣ, ଦାଢ଼ିବାଲା ଧର୍ମୀୟ ଶଇତାନ, ଉତ୍କଟ ବ୍ରାହ୍ମଣ ସାମ୍ପ୍ରଦାୟିକତାବାଦୀ ବୁଦ୍ଧିଜୀବୀ, କେତୋଟି ଦୈନିକ ପତ୍ରିକାର ସଂପାଦକ । କହିବାକୁ ଗଲେ, ସମଗ୍ର ସମାଜଯନ୍ତ୍ର ଦିବାରାତ୍ରି ଚକ୍ରାନ୍ତ ତଥା କ୍ରିୟାଶୀଳ ମୋର ସାହିତ୍ୟିକ-ବ୍ୟକ୍ତିତ୍ୱର ଅସ୍ତିତ୍ୱକୁ ଏବଂ ଜୀବନର ସବନମ୍ର ନିରାପତ୍ତାକୁ ଚୂର୍ଣ୍ଣ-ବିଚୂର୍ଣ୍ଣ କରିଦେବାଲାଗି ।

ଏକ କୋଷମୁକ୍ତ ଶାଣିତ ତରବାରୀକୁ ହିତାହିତଜ୍ଞାନଶୂନ୍ୟ କୌଣସି ପଶୁ ଯଦି ଚର୍ବଣ କରି ବସେ, ତାର ଦଶା ଯାହା ହେବା ସ୍ୱାଭାବିକ, ମୋ ବିରୁଦ୍ଧରେ ଗଠିତ ଚକ୍ର ଓ ତାର "ମହାମାନ୍ୟ" କର୍ଣ୍ଣଧାରମାନଙ୍କର ଦଶା ତାଠାରୁ ଅଧିକ ଶୋଚନୀୟ ହୋଇଥିଲେ ମଧ୍ୟ ସେମାନଙ୍କର ଚୈତନ୍ୟ ଏଯାବତ୍ ଉଦୟ ନ ହେବା ଏକ ଆଶ୍ଚର୍ଯ୍ୟର କଥା ! ମସୀମୁଣ୍ଡର ସତ୍ସାହସ, ନୈତିକ ମେରୁଦଣ୍ଡ ହରାଇ ସେମାନେ ସେମାନଙ୍କ ବାହିନୀସହ ସଂପ୍ରତି ଦଣ୍ଡାୟମାନ ମୋର ପ୍ରବାସ-କୁଟୀର ଚତୁଷ୍ପାର୍ଶ୍ୱରେ । ହାତରେ ସେମାନଙ୍କର ଢେଲା-ପଥର, ମୁହଁରେ ଅଶ୍ରାବ୍ୟ, ଅକଥ୍ୟ ଗାଳିଗୁଲଜ୍ । ପିଙ୍ଗଳ କୋର୍ଟ ନୀରବ, ଆଇନ ବିରହୀ-ପ୍ରେମିକ ପରି ଉଦାସୀନ, ପ୍ରତିବେଶୀ ଭୟ ଆଉ ଆତଙ୍କରେ କେବଳ ନୀରବଦର୍ଶକ ନୁହେଁ, ଅନିଚ୍ଛା ସତ୍ତ୍ୱେ ମୋର ଶତ୍ରୁ ଶିବିରଭୁକ୍ତ !

ମୁଁ ପୃଥିବୀରେ ଜନ୍ମଗ୍ରହଣ କରିଛି ମୋର ମାନବିକ-ଅଧିକାର (*Human-Right*) ନେଇ । ମୋର ବୈପ୍ଳବିକ ଭୂମିକା, ସ୍ପଷ୍ଟବାଦ, ସତ୍ୟ-ସେବା, ନିର୍ଭୀକତା ଦ୍ୱାରା ଯଦି କେହି ଆହତ, ଅସନ୍ତୁଷ୍ଟ ହୁଏ, ସେଥିରେ ମୋର କୌଣସି ଯାଏ ଆସେନା । ଯେଉଁ ଆଦର୍ଶ ପାଇଁ ମୁଁ ମୋର ଜୀବନବ୍ୟାପୀ ବିପ୍ଳବର ଅଗ୍ନିମୟ ପଥର ପଥିକ, ସେ ଆଦର୍ଶକୁ ପରିତ୍ୟାଗ କରି ପଶୁବଳର ଦରବାର ଆଗରେ ନତମସ୍ତକ ହେବା ଅପେକ୍ଷା ଆତ୍ମଘାତହିଁ ଶ୍ରେୟସ୍କର ବୋଲି ମୁଁ ମନେ-କରେ ।

ବଡ଼ ଆଶ୍ଚର୍ଯ୍ୟର କଥା, ମୋର ଅତ୍ୟନ୍ତ ଅପରିଚିତ ବ୍ୟକ୍ତି ମଧ୍ୟ ମୋତେ ଆଘାତ କରି ତାର ସ୍ମୃତି ମୋ ଭିତରେ ରଖିଦିବା ପାଇଁ ଆଜି ବ୍ୟଗ୍ର ହୋଇ

ଉଠିଛି ! ଏ ସବୁ କର୍ମକାଣ୍ଡ ତଥା ଘଟନାକୁ ବିଶ୍ଳେଷଣ, ସମୀକ୍ଷା, ବ୍ୟବଚ୍ଛେଦ କରି ମୁଁ ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇଛି—ନିଷ୍ଠ ତତ୍ତ୍ୱବିତରେ ମୋର ସାଧନା, ସ୍ଥିତି, ଅଗ୍ରଗତି ଓ ସଂଗ୍ରାମ ସମାଜକୁ କିଛି ନା କିଛି ଖାଦ୍ୟ, ଖାଦ୍ୟ ସତ୍ୟର ଔଷଧ ପ୍ରଦାନ କରିଛି । ସେଥିପାଇଁ ଯଦି ମୋର ପ୍ରାଣହାନି ବି ଘଟେ ତାହେଲେ ତାହାହିଁ ହେବ ମୋର ଚରମ ସାଫଲ୍ୟ ।

"ପୋଷାକ ଅନୁସାରେ ସଂବର୍ଦ୍ଧନା" ଯେଉଁ ଜାତି, ଯେଉଁ ସମାଜର ବଦଭ୍ୟାସ ସେଠି ଅନ୍ୟାନ୍ୟ ସୌଖୀନ୍ ଲେଖକଙ୍କ ପରି ଯେହେତୁ ମୋର ବଂଶ, ଅଟ୍ଟାଳିକା, ସାମାଜିକ-ପଦାଧିକାର, ନାମ ପଛରେ ଶିକ୍ଷାଗତ ଯୋଗ୍ୟତାର ବିଜ୍ଞାପନ ନାହିଁ, ସେହେତୁ ମୋର ସ୍ୱାଧୀନମତ ବ୍ୟକ୍ତ କରିବାର ଅଧିକାର, ଲେଖନୀ ଚାଳନାର ସ୍ୱାଧୀନତା, ସାରସ୍ୱତ-ସାଫଲ୍ୟର ଅଧିକାର ମଧ୍ୟ ନାହିଁ । ଏ "ଗଣତାଂତ୍ରିକ ମନୋବୃତ୍ତି"କୁ ଭାଷାରେ ପ୍ରକାଶ ନ କରି କାର୍ଯ୍ୟକଳାପରେ, ମୋର ବିକାଶ ପଥରେ ପ୍ରମାଣିତ କରାଯାଇଛି ଶତ ସହସ୍ରବାର !

ମୋର ପ୍ରତିଭା-କାତର କୁତ୍ସାକାରୀ ସାହିତ୍ୟିକ-ପ୍ରତିଦ୍ୱନ୍ଦ୍ୱୀ ତଥା ଦୁର୍ନୀତିର ଗ୍ଲାନିଯୁକ୍ତ ପଙ୍କପୁରୋଧା ଏବଂ ସମାଜର ବଡ଼ପଣ୍ଡା ମାନଂକର "ସୌଭାଗ୍ୟ" ସେମାନେ ଯେଉଁ ବାଟ ଦେଇ ମୋତେ ଆସିବାକୁ ବାଧ୍ୟ କରିଛନ୍ତି ଏଯାବତ୍, ସେ ବାଟରେ କେବଳ ଆସନ୍ତି ଚୋର, ଡକାୟତ, ପକେଟ୍‌ମାରୁ, ଦୁର୍ଦ୍ଧର୍ଷ ରକ୍ତପିପାସୁ ଖୁଣୀ । ଶୈଶବରୁ ଯୌବନ ପର୍ଯ୍ୟନ୍ତ ମୁଁ ସେ ବାଟରେ ଦିବାରାତ୍ରି ଚାଲି ଚାଲି ଆସିଥିଲେ ମଧ୍ୟ ତାହା ନ ହୋଇ ହୋଇଛି କବିଟିଏ । ଏହା ସେମାନଙ୍କ ପକ୍ଷରେ "ଈଶ୍ୱରଙ୍କ ଆଶୀର୍ବାଦ" ବ୍ୟତୀତ ଆଉ କ'ଣ ହୋଇପାରେ ? ମୋର କାବ୍ୟପୁରୁଷ ବିରୁଦ୍ଧରେ ସମସ୍ତ ସାମାଜିକ-ଆକ୍ରମଣ, କୁତ୍ସା, ଅବରୋଧ ପରିଶେଷରେ ମୋର ପ୍ରାଣନାଶର ଏକାଧିକ ଷଡ଼ଯନ୍ତ୍ର ଇତ୍ୟାଦିର ଅନ୍ତର୍ନିହିତ କାରଣ ହେଲା—ସମସ୍ତ ପ୍ରତିକୂଳତା ସତ୍ତ୍ୱେ ଓଡ଼ିଆ କାବ୍ୟାକାଶରେ ଝଡ଼ ପରି ମୋର ଦୁର୍ବାର ଜୟଯାତ୍ରା ଏବଂ ସାରସ୍ୱତ-ସାଫଲ୍ୟ ଆଉ ଲୋକପ୍ରିୟତା ।

ଅନେକ ଅବାନ୍ତର ବ୍ୟକ୍ତିଗତ ଘଟଣାର ଚିତ୍ର ଦେବାକୁ ବାଧ୍ୟ ହେଲି ଏହି କାରଣରୁ, ଏହାହିଁ ରକ୍ତମାଂସର ଦେହଧାରୀ ଗୋଟିଏ ନିରପରାଧ କର୍ମମୁଖର କବିର ସାଂପ୍ରତିକ ପରିବେଶ । ସେଥିପାଇଁ ପାଠକ-ପାଠିକା ମୋତେ କ୍ଷମା ଦେବେ ।

ଏ ଗ୍ରନ୍ଥର ପ୍ରଥମ ସଂସ୍କରଣ ଅନେକ ଦିନରୁ ନିଃଶେଷ ହୋଇ ଯାଇଥିଲେ ମଧ୍ୟ ନାନା ଘାତ-ପ୍ରତିଘାତ, ସଂଘାତ ତଥା ଆତ୍ମରକ୍ଷା ଲାଗି ବାଧ୍ୟତାମୂଳକ

ସଂଗ୍ରାମରେ ଜଡ଼ିତ ରହି ଏହାର ୨ୟ ସଂସ୍କରଣ ଲାଗି ଯତ୍ନବାନ ହୋଇପାରି ନ ଥିଲି ।

ଏ ଗ୍ରନ୍ଥର ନବ-କଳେବର କାଳରେ କହିରଖେଁ, ପ୍ରଥମ ସଂସ୍କରଣରେ ଥିବା କେତୋଟି କବିତାକୁ ଏ ସଂସ୍କରଣରେ ବାଦ୍ ଦିଆଯିବା ସଂଗେ ସଂଗେ କେତେକ କବିତାର ଶିରୋନାମା ପରିବର୍ତ୍ତନ, ଆଂଶିକ ସଂଶୋଧନ, ନୂତନ କେତେକ କବିତାର ସଂଯୋଜନ କରାଯାଇଛି । ତେଣୁ ସେଥିପାଇଁ ମୁଁ ପାଠକ ଦରବାରରେ କ୍ଷମାପ୍ରାର୍ଥୀ ।

ପରିଶେଷରେ ଜେ. ମହାପାତ୍ର ଏଣ୍ଡ୍ କୋଃର ସ୍ୱତ୍ୱାଧିକାରୀଙ୍କୁ ଏହାର ସୁଦୃଶ୍ୟ ନବକଳେବର ପାଇଁ ଯଥେଷ୍ଟ ଧନ୍ୟବାଦ ।

ବିପ୍ଳବୀ ଅଭିବାଦନ ସହ

# ତମେ ଦେଖିଥିବ !

ତମେ ଦେଖିଥିବ, ମୁଁ ଦେଖିଛି ତାକୁ
କେବେ କାଠଯୋଡ଼ୀ କୂଳେ
କେବେ ଅବା ତାକୁ କଟଣ୍ଣ ହତାର
ଦେବଦାରୁ ଗଛ ମୂଳେ !

ବେଳେ ବେଳେ ତାକୁ ଟାଉନ୍‌ହଲ୍‌ର
ମୁଖଶାଳା ତଳେ ଦେଖେ,
ପୁଣି ବେଳେ ବେଳେ ଦେଖିବାକୁ ମିଳେ
ବକ୍‌ସିବଜାର ଛକେ ;

କେତେଥର ମୁହିଁ ଦେଖିଛି ତାକୁ ତ
ମଧ୍ୟମାଘ ଝଡ଼ବେଳେ,
ହସ୍ପିଟାଲ୍‌ଗେଟେ, ମନ୍ତୁଦୋହଲା
ଦେବଷ-ଶୀତର ତଳେ ।

ପୁଣି କେତେଥର ଦେଖିଅଛି ତାକୁ
ଅଙ୍ଗ ପଖାଳିବାରେ
ଏଇ ସହରର ମ୍ୟୁନିସିପାଲିଟି
ଦୂଷିତ ତଡ଼ାଗ ଜଳେ ।

ବାଙ୍ଗାବଜାର ଧର୍ମଶାଳାର
ଅଗରେ ହେବାର ଠିଆ—
ଦେଖିଛି ଦେହରେ ଛିନ୍ନ-ବସନ
କୋଳରେ ଗୋଟିଏ ଛୁଆ ।

ଆଖି ବୁଜି ସେ ତ ନିର୍ବିକାରରେ
ଅବିରତ ଚାଲେ ଝୁଣି
ମୂକତାର ସେହି ନୀରସ ଶୁଷ୍କ —
ସ୍ତନର ବୃନ୍ତ ବେନି ।

ମେଘ-ମେଦୁରିତ ନିର୍ଜନ ରାତେ
କଟକ ରାସ୍ତା ଧାରେ,
କେତେଥର ମୁହିଁ ଦେଖିଅଛି ତାକୁ
ଏକୁଟିଆ ବସିବାରେ ।

। ୨ ।

ଦିନେ ଫେରୁଥିଲି କାଠଯୋଡ଼ୀ କୂଳୁଁ
ସାନ୍ଧ୍ୟ ଭ୍ରମଣ ସାରି
କଟକ ସହରର ପିଚୁ ରାସ୍ତାରେ
ଗୋଟିଏ ଗୋଟିଏ କରି ।

ସନ୍ଧ୍ୟା ଆଗମେ ବତୀଖୁଣ୍ଟିରେ
ବତୀ ଯାଉଥିଲି ଲଗି,
ଦୂରରୁ ଦେଖିଲି, ସବୁ ଦିନ ପରି
ବସିଅଛି ହତଭାଗୀ ।

ଯଉବନ-ଫୁଲେ କିଏ ବା ଅକାଳେ
ଢାଳିଛି ଉଷ୍ଣୋଦକ !
ତାମ୍ରବର୍ଣ୍ଣ କୁନ୍ତଳ ରାଶି
ବିମଳିନ ଦିଶେ ମୁଖ ।

ଲଲାଟପଟେ ତା ଫୁଟି ଦିଶୁଥିଲା
ଭାବ-ଗମ୍ଭୀର ରେଖା
ସେଇ ରେଖା ତଳେ ଲୋଚନ ଯୁଗଳ
ସତେ ବା ଅଗ୍ନି ଶିଖା !

ଗୃହାଣିରେ ତାର ଶୃଙ୍ଖଳ କଟା
ଉଠଇ ଘୂର୍ଣ୍ଣିବାତ,
ନିଃଶ୍ୱାସ ତାର ବନ୍ଦ ଦୁଆରେ
ହାଣେ ଅବା କରାଘାତ !

ନିଘୋଡ଼ ନିଦରେ ଶୋଇଥିଲା ତା'ର
କୋଳରେ କୋଳର ଛୁଆ,
କଥା ଅଛି ପରା "ଅଷ୍ଟିନେ ହିନା
ଅଟଇ ଦଇବ ସାହା ।"

। ୩ ।

ଇଚ୍ଛା ହେଲା ମୋ ଡାକି ପଚାରିବ
କେଉଁଠି ତାହାର ଘର ?
କାହାର ଝିଅ ସେ ? କାହା ପ୍ରଣୟିନୀ ?
କିଏ ସେ ତାହାର ବର ?

କେଉଁଥି ପାଇଁକି ଏଇ ତରୁ ତଳେ
ପକାଏ ଦୀର୍ଘଶ୍ୱାସ ?
ମନେ ଥିର କଲି—ଲେଖିନେବି ତାର
ଜୀବନର ଇତିହାସ ।

ଧରିଲି କଲମ, କାଢ଼ିଲି କାଗଜ
ଆଗରେ ତା ହେଲି ଠିଆ,
ହଠାତ୍ କାହାର ବିଦ୍ରୂପ-ହସେ
ଥରି ଉଠିଲା ମୋ ହିଆ ।

ନିର୍ନିମେଷରେ ଚାହିଁଲା ଯୁବତୀ
ନୟନ ବେନିକୁ ବାରେ
ଫଟେ ବା ଯେପରି ଆଗ୍ନେୟ ଗିରି
ଅଗ୍ନି ତା ଉଦ୍‌ଗାରେ !

ଲପନେ ତାହାର ଗୁହ୍ନିଁ ଚମକିଲ
ଚମକି ଉଠିଲା ଗ୍ରୁଡ
କିବା 'ଇତିହାସ' ଲେଖିନେବ ତାର
'ହାସ' ତ ହୋଇଛି 'ଇତି' ।

। ୪ ।

ପୁଚ୍ଛିଣି ଭାବିଲି—କାହିଁକି ବା ତାର
ଶାନ୍ତିରେ ବାଧା ଦେବି ?
କାହିଁକି ବା ତାର ଗୋପନ-କ୍ଷତରେ
ଅଗ୍ନି ମୁଁ ଜଳାଇବି ?

ପ୍ରଶ୍ନ ପଚାରି ଅନ୍ତରେ ତାର
କାହିଁକି ବା ଦେବି ବ୍ୟଥା ?
ନିଭୃତେ ଜଳେ ମନ-ମଶାଣିରେ
କୋଟି ବେଦନାର ଚିତା ।

ଏ ତ ଖାଲି ନୁହେଁ, କେତେ ଯୁବତୀର
ଯଉବନ ହଜିଯାଏ —
ଏଇ ସମାଜର ରଥଚକ ତଳେ
ଶୁଭେ ଖାଲି 'ହାଏ', 'ହାଏ' ।

ପଢ଼ିଏ ମଧୁର କଥା ମୁଁ ପଚାରି
ଟଙ୍କେ-ଆଠଣା ଦେଲେ
ଜୀବନରୁ ତାର କଷଣ ଯିବ କି
ଏଇ ସମାଜରେ ଥିଲେ ?

ନିରକ୍ତ ତାର ଯୁଗଳ ଅଧର
ରକ୍ତାଭ ହେବ କିବା,
ତଇଳ ବିହୀନ ଶ୍ଳଥ-କୁନ୍ତଳ
ହେବ କି କୃଷ୍ଣ ଗଭା ?

ଗତ ଯୌବନ ଆସିବ ନା ଫେରି
ଓଠରେ ଫୁଟିବ ହସ ?
ଅବନତ ଭୂତ ଉନ୍ନତ ହେବ
ହେବ ନତମୃ ଦେଶ ?

କୋଳର ଝୁଆଟି 'ମଣିଷ' ହେବ କି
'ନାଗରକେ' ଗଣା ହେବ ?
ନିର୍ବାଚନରେ ଭୋଅଟ ଖଣ୍ଡେ
କାକ୍ସେ ଗଳାଇ ଦେବ ?

ଗର୍ବିତ ବୁକେ ଚାଲିବ କି ପଥ
ଯେ ପଥେ ଆସିଛୁ ମାଆ,
ପ୍ରୀତି-ଉର୍ମ୍ମିଳ ପାରାବାର ନୀରେ
ବାହିବ ଜୀବନ-ନାଆ ?

ମୋର କଳ୍ପିତ ସାମୟିକ ଦାନେ
କିଛି ନାହିଁ ବଦଳିବ
ଯେତେଦିନ ଯାଏଁ ଏ ଜରାସନ୍ଧ-
ସମାଜଟା ରହିଥିବ ।

। ୫ ।

ଠନ୍, ଠନ୍, ଠନ୍—ରାତି ସାତ ବୋଲି
ଶୁଭିଲା ଘଣ୍ଟା ନାଦ,
ସ୍ମୃତି ତଳେ ଧରି ଚୁକ୍ତି-ବେଦନା
ଚାଲିଲି ଆଗକୁ ପାଦ ।

ରାସ୍ତାର ମୋଡ଼ ବୁଲିବା ବେଳେ ମୁଁ
ଚାହିଁଲି ପଛକୁ ଫେରି
ଯୋଉଠି ସେଇଠି ବସିଛୁ ମୁବତୀ
ଛୁଆକୁ କୋଳରେ ଧରି ।

ଗାଢ଼ୁଁ ଗାଢ଼ତର ହୋଇ ଆସୁଥିଲା
ଜୁନ୍ ବାଇଶିର ନିଶା
କା'ର ଆଗମନେ ଗୁମ୍ଫି ବସିଥିଲା
ଯୁବତୀ ମୁକ୍ତକେଶୀ ।

ଲଂବ ତ ଥିଲା ଗ୍ରୀବାଟି ତାହାର
ଟେଲିଗ୍ରାଫ୍ ତାର ପରି—
ଆଗରୁ ଆଗକୁ, ଅଫିମର କଳା-
ଗାଢ଼ ଅନ୍ଧାର ଚରି ।

|| କଟକ ||

୩, ଅକ୍ଟୋବର
୧୯୫୮



# ହେ ମୋର ଶାମ୍ବୁକ !

ହେ ମୋର କଲମ
ହେ ମୋର ନୂତନ
ଚକ୍ରବାଳ,
ସର୍ବହରାର
ଖଡ୍‌ଗଧାର,
ଏଇ ବାଜେ ଶୁଣ
ପ୍ରାଣ-ବଂଶୀରେ
ମରଣ-ସୁର !

ଅନ୍ଧକାରରେ
ବାହୁନଅ ମୋର
କନ୍ଦ୍ରୀଘୋଷ,
ପୋଛ ଏ ଜୀବନୁ
ଦୀର୍ଘଶ୍ୱାସ,
ଶୁଣାଅ ବନ୍ଧୁ
ନବଜୀବନର
ପୂର୍ବାଭାସ !

ସଦଳେହନର
ଅନ୍ଧାର ଆଜି
ଗମ୍ଭୀରତମ,
ଦୁଃଖ ହେଲାଣି
ଅଂଗଲେମ,
ଜନନୀ, ଭଗିନୀ
ଆଖିର ଲୁହରେ
ଜ୍ୱଳୁଛି ହୋମ ।

କେତେ କୁଳବଧୂ-
କୁଂତଳେ ଅଜ୍ଞ
ବାଜୁଛି ଘଣ୍ଟା,
ଝଙ୍କନରୋଳ
ଯାଉଛି ଶୁଣା,
ନାଗିନୀ ଆଜି
ପଣ୍ୟ ରୂପରେ
ହେଉଛି କିଣା ।

ଫାଲ୍‌ଗୁନ-ବନ-
ମନ୍ଦ-ପବନ
କାନ୍ଧ ବୁଲେ,
ଜୀବନ-ମଳୟ
ଧନ୍ଦ ବୁଲେ,
ଫଣିମାର ଫଣା
ଦଂଶନ କରେ
ନଗ୍ନ-ଫୁଲେ ।

କମାଇ ସମାଜ-
ବଜାରେ ନଜର
ଜଂଘନ ଭାଉ,
ଊର୍ଦ୍ଧ୍ୱେ ଉଠାଇ
ବଜ୍ରବାହୁ
ଗୋଡ଼ାଇଲେ ଦିଏ
ମୃତ୍ୟୁ ପନ୍ଥରେ
ଜୀବନ ଥାଉଁ ।

ଶୋଣିତ-ପଥରେ
ଚରଣ-ଚିହ୍ନ
ଢଳଇ ଯାଉ,

ହେହ୍ବ ଯେ ଗଲେଣି
ଯାତ୍ରୀଦଳ,
ମୁଖରିତ କରି
ପଲ୍ଲୀ, ନଗର,
ପ୍ରାସାଦ, ପୁର ।

ସେ ପଥ ଯାତ୍ରୀ
ଯାତ୍ରାପଥର
ନାହିଁ ମୋ ସୀମା,
ସେପାଇଁ ଧରିଛି
ବହ୍ନି ବାନା,
ଭେଟିବାକୁ ହେବ
ସେହ୍ବ ଯେ ଗଲେଣି
ମୁକ୍ତିସେନା ।

ଆଜି ଏତେବେଳେ
କ୍ଲାନ୍ତ-ଚରଣେ
ଦିଅ ହେ ବଳ,
ହେ ମୋର କଲମ
ଶକ୍ତି-ଶୂଳ,
ନିରାଶାର ଘନ-
ଅନ୍ଧାରେ ତମେ
ଆଶାର ଫୁଲ ।

ତୁମକୁ ଧରି ମୁଁ
ସୃଷ୍ଟି କରିବି
ଘୂର୍ଣ୍ଣିବାତ,
ପୋଛିଦେବି ଯେତେ
ଦୈନ୍ୟ-ଗୀତ,
ଦୂରତେ କରିବି
କାବ୍ୟ-ଅନଳେ
ଭସ୍ମୀଭୂତ ।

ଦୁଃଖ-ସାଗରେ
ଝଡ଼ ସମ ମୁଁ ତ
ଉଠିବ ଫୁଲ୍,
ଭରବାଣି ସମ
ଡମରୁ ଢୋଲ,

ଜାଳି ଦେବାପାଇଁ
କୋଟି-କୁଡ଼ିଆର
ନଭିଲା ଚୁଲି ।

ମଶାଣି ମାଟିରେ
ନାଚବ କବ ମୁଁ
ରୁଦ୍ର ସମ,
ମୁଁ ନବଯୁଗର
ପରଶୁରାମ,

ପୃଥିବୀ ବୁକୁରୁ
ପୋଛିଦେବ ଯେତେ
'ଶାସକ' ନାମ ।

ମରଣ-ବିଜୟୀ
ହେ ମୋର କଲମ,
ଚଳରେ ଚଳ,
ଆଜି ଏତେବେଳେ
ଆସିଛି ବେଳ,

ତୀକ୍ଷ୍ଣ ମୁନରୁ
ମସୀ ନୁହେଁ, ଖାଲି
ଅନଳ ଢାଳ !

ସ୍ପନ୍ଦନହୀନ
ବୁକେ ଜାଳିଦିଅ
କାବ୍ୟଶିଖା,
ପୌରୁଷ ହେଉ
ରକ୍ତମୁଖା
ଧ୍ୱାଂନ୍ତ-ପଥରେ
ଟାଣିଦିଅ ସାଥୀ
ଆଲୋକରେଖା !

ତତାଇ ଦିଅ ହେ
ଅଯୁତ ଶିରାର
ଶୋଣିତ କଣା,
ଜଳିଯାଉ ଯେତେ
ନର୍‌ଯାତନା,
ଝଂକାର ଉଠ
ହେ ମୋର କଲମ
ଅଗ୍ନିବୀଣା !

ରୁଦ୍ର-ଆବେଗେ
ବିବ୍ରତ ଆଜି
ଯୋଦ୍ଧା ମୂର୍ତ୍ତି,
କର କର ମୋତେ
ମରଣଜୟୀ,
ମରଣ-ବଧୂକୁ
ଚୁମ୍ବନ ଦେବି
ଜୀବନ ପାଇଁ ।

॥ ୧୯୪୭ ॥

# ଗୋଲ୍ଡଫେଲ୍ ଯାତ୍ରୀ

ହେ ମୋର ପ୍ରେୟସି, ତମକୁ 'ଚନ୍ଦ୍ରମୁଖୀ'
ଆଉ କହିବନି, ବସିବ ସ୍ନୋପୁଡ଼ା ଗାଲେ,
ପୁଣି କେଉଁ ନାମେ ବସିବି ତମକୁ ଡାକି ?
ଯେଉଁକଥା କବି ଦେବଯ-ରାଶି ଭାଳେ ।

କଳଙ୍କଲେପର ଚନ୍ଦ୍ର ମରିଛି ଆଜି
ବିଜ୍ଞାନ ତାର ଓଢ଼ଣା ଦେଇଛି ଟାଣି,
ତମପାଇଁ ନୂଆ ଉପମା ବସିବ ଖୋଜି
ହେ ମୋର ପ୍ରେୟସି, ହେ ମୋର ନିତମ୍ବିନୀ !

ଆଦମ ଯୁଗର ମଧୁର ନୂପୁର ଧ୍ୱନି
ରୂପକଥାରେ ତ ହୋଇଅଛି ପରିଣତ,
ବାସ୍ତବ ଆଜି କେବଳ ଚପଲ ଧ୍ୱନି
ନାଲିପେଣ୍ଟ୍ ତଳେ ଗଳିଅଛି ମନ୍‌ମଥ ।

ତମର ନିବିଡ଼ କଟି ପଶ୍ଚାତଭାଗ
ଦୋଳା-ଚଞ୍ଚଳ ତମର ଏ ଯେଉଁ ବେଣୀ
ମନେ ଆଣେ ମୋର ଗୁରୁତର ଅଭିଯୋଗ
ତମର ସ୍ତନର ମାଂସ-ଟଇଳ ବେନି—

ଏ ସବୁ କି ତମେ ବଜାରରୁ ନାହିଁ କିଣି ?
ଗୋପନକ୍ରିୟା ଗୋ, ତମେ କି ନର୍ଭେଜାଲ ?
ତମ ପୀରଢ଼ିରୁ କଲେ-ଦୁଇକଲେ କିଣି
କେତେଦିନ ମୁହିଁ ପ୍ରେମିକ କାଟିବି କାଳ ?

ଯୁଗତରୁ ଶାଖେ ତମେ ମହାକାଳ ଫଳ
ତମ ଅନ୍ତର ମନ୍ଥିଲେ ଖାଲି ଘିନା,
ମିଳିବ ନିପଟ ନରକ ଅନ୍ଧକାର
ଯାନ୍ତ୍ରିକତାର ହାହାକାର, ଯନ୍ତ୍ରଣା ।

ତମକୁ ଡାକିବି ଏଥର 'ବିଜ୍ଞାନିକା'
ଅବାଧ ଗାମିନୀ, ନିର୍ଭୀକା, ଲୁପାବତୀ[1]
'ନିରୋଧ' ଯୁଗରେ ସବୁ ନାରୀ ନିର୍ଭୀକା
ଭଙ୍ଗୁର ଆଜି ବିକାମ ପ୍ରେମ ଗୀତ ।

ମନେହୁଏ, ମୁହିଁ ଜଣେ ଗାଡ଼ିଫେଲ୍ ଯାତ୍ରୀ
ତମ ମୁସାଫିର୍ ଖାନାରେ ହୋଇଛି ଠିଆ,
ଗାଡ଼ି ଗୁଲିଗଲା, ଘନାଇ ଆସିଛି ରାତି
ହାତେ ମୋ ଟିକେଟ୍, ବେରସିକ ମୁହିଁ ଯାହା !

୧ ମାର୍ଚ୍ଚ, ୭୦ 

[1] ଲୁପ୍ ନେଇଥିବା ଅର୍ଥରେ ।

# ମରଣକୁ... ★

ଆଜି        ଜୀବନର ରଙ୍ଗଭୂଇଁରୁ ଆସିଛୁ ବରଣ
ତମେ        ଜାଣିରଖ, ମୋର କାମଦାମ କଛୁ ସରନି
        ମୁଁ ତ        ଜାଣେ ତମେ ଯିଏ ଆସୁଛ...
                ଅତି ବିଶ୍ୱାସୀ ବନ୍ଧୁ ହେ ମୋର
                        ଅନ୍ତିମ ସଖା ମରଣ !
କିଆଁ        ଅସମୟେ ଆସ ସଖା ହେ ?
ମୁଁ ତ        ଯାତ୍ରୀ ଚାଲିଛି ଏକା ହେ,
        ସମ୍ମୁଖେ ମୋର ଅନ୍ଧାର ଘେରି ମେଦିନୀ
ମୁଁ ତ        ଯାଇ ପାରିବନି ହାତରେ
ଯମ        ନ ପାହିଲେ ଏଇ ରାତିରେ
        ସେ ଯାଏଁ ଶୁଣିନି
                ଆଗାମୀ ଉଷାର ବୋଧନୀ ।
    ତମ ପଦପାତେ ଥରି ଥରି ଉଠେ
                ଏ ମୋର ଜୀବନ-ତୋରଣ···
        ହେ ମୋର ବନ୍ଧୁ ମରଣ !

ଆଜି        କୁଟୀରେ କୁଟୀରେ ଶକୁନର ନୀଡ଼ ରଚନା,
କେତେ        ଆଖି ଉପକୂଳେ ଲୋତକ-ଢେଉର ଆଘାତ,
ଖାଲି        ମରଣ-ବଂଶୀ ବାଜଇ ତମର ଦଶାରେ···
                ଭିକ୍ଷାହୀନ ଆଜି ଆଶାରେ ।
    କେତେ    ପ୍ରାଣ-ପକ୍ଷୀର ନୀଡରେ
    ଖାଲି        ଜମିଛୁ ତମସା ଭିଡ଼ରେ···
            ହାହାକାର କରେ କେତେ ଜୀବନର ଚକୋର,

---

★ ପ୍ରଥମ ସଂସ୍କରଣରେ କବିତାଟିର ଯାହା ଶିରୋନାମା ଥିଲା ତାହା ଏଠାରେ ପରିବର୍ତ୍ତିତ ହେବା ସଂଗେ ସଂଗେ କବିତାଟି ମଧ୍ୟ କେତେକାଂଶରେ ସଂଶୋଧିତ ହୋଇଛି । —ଲେ :

କିଏ ବସି ବସି
ଚାଲେ ଢଦାନଶି
ରୁଦ୍ଧ-ଶ୍ୱାସ ବ୍ୟକ୍ତିର,
ମାନବ ତ ଆଜି ଦାନବ ସାଜନ୍ତି
ଧନତନ୍ତ୍ରର ନିଶାରେ,
କି ଗୀତ ଲେଖିବ ?
ପାଉନି ବନ୍ଧୁ, ଭାଷାରେ !

ହାୟ, ଅକାଳରେ କେତେ ବାହୁ-ବନ୍ଧନ ତୁଟୁଛି !
ମଳୟ ମଳିଣି,
ଖାଲି ତ ନିଦାଘ ଲୁଟୁଛି ।
କେତେ ଆଳସ୍ୟର ମଥାନେ ମଥାନେ
ପ୍ରଳୟ ଘୂର୍ଣ୍ଣି ବତାସ,
ଘୂରି ବୁଲେ କଳାଗ୍ରଇ ହେ,
ଖାଲି ତମର ବିକଟ ହାଇ ହେ !

ନିର୍ମ୍ମମ ତମେ, ତମର ହାତର ପରଶେ
କେତେ କୁଡ଼ିଆରେ ଲୋତକର ଘନ ବରଷେ !
ତମ ଦରଶନେ ହଂସା କା ଉଡ଼େ
ନାଡ଼ୀରୁ ନାଡ଼ୀରୁ ସ୍ପନ୍ଦନ ଗୁଡ଼େ
ଆଖିର ପଲକେ ତମେ କରପାର
ସାବିତ୍ରୀନ୍ନାଆକୁ ସଦା ହେ,
ଜୀବନକୁ ଘେରି, ତମେ ବୁଲ ଘୂରି
ପ୍ରତି ପଦପାତେ ଜାଗେ ତମ ଚିହ୍ନ ସଦା ହେ !

ଯେବେ ଜଠରେ ତମର କ୍ଷୁଧାର ଅନଳ ଜଳୁଛି,
ଯେବେ ଜୀବନର ସୁରଗ୍ରାନ ପାଇଁ ମନ ବଳୁଛି,
ତେବେ ଏଇ ଦେଖ ସେଠି, ଅଦୂରେ,
କେତେ ଝରୁଛି ସୁଖର ମଧୁରେ,

'ମାନବ' ନାମରେ ନର-ଦାନବର
ଝୁଲିଛି କେବଳ ମେଳଣ···
ମରଣ ହେ ତମେ
ସେଇ ପଥେ ହେଲ ଚରଣ !

ଧୀରେ ଧୀରେ ଯିବ
ଯେଉଁଠି ଦେଖିବ
ଶଯ୍ୟା ଉପରେ କବ୍ୱଳ ବେଣୀ,
କୁସୁମ-ହାସିନୀ
ଲଜ୍ଜା-ନାଶିନୀ
ମୁକୁଳା ତନୁରେ ଲେଟିଛି···
ପାଉଦ ଅଳ୍ପ ତଳେ ତଳେ ଖାଲି
ଚମ୍ପନ ନାଦ ଉଠୁଛି···
ହୃଦରେ ହର୍ମ୍ୟ ଫାଟୁଛି ।
ମୁଣ୍ଡ ଟେକିଛି 'ଅଭିଜାତ୍ୟ'ର ତୋରଣ···
ତମେ ସେଇଠି ପଶିବ ମରଣ !

ଏତ ରାତର ଦ୍ୱିତୀୟ ଯାମ ହେ,
କେତେ ବାକି ତ ପଡ଼ିଛି କାମ ହେ,
ମୋତେ ବ୍ୟସ୍ତ କରନା ସାଥୀ ହେ,
ଖାଲି ପାହିବାକୁ ଦିଅ ରାତ ହେ !

ସଂଧାନୀ ମୁଁ ତ ସଂଧାନେ ଯିବ
ଜାଳି ମୋ ଆଖିର ନିଆଁ ହେ,
ଏ କଳା ରାତର ସିଂହଦୁଆରେ
ରଥ ମୋ ହୋଇଛି ଠିଆ ହେ !
ଜୀବନରୁ କିଛି ମାନ କଟିଛି
ଦରଫୁଟା ମୋର ଫୁଲକି
ତେବେ ବି ତ ତମେ ବୁଝୁନାହଁ କେତେ
ତରୁଣ ଜୀବନ ମୂଲକି !

ଭାତ ଭୂଇଁ ଆଜ ସ୍ୱାଧୀନତା ପାଇଁ
ଗଲି, କ୍ଲାନ୍ତ ମୋ ଚରଣ···
ତମେ କି ଜାଣନା ମରିଣ ?
ମୁଁ ତ ପାଦ ଦେଲାବେଳେ ଉଦ୍ଦାମ ଯଉବନରେ
ମୁଁ ତ ଥିର କରିଥିଲି ମନରେ—
ଅମା-ରଜନୀର
ଦୁଃଖ-ପ୍ରହର—
ନ କଟିବା ଯାଏଁ
ତମ ସାଥେ ମୋର
ହୋଇବନି ଦେଖା ମରଣ···
ତାହାର ଭିତରେ ଭାଂଗି ଗଲଣି
ଅମାନବତାର ତୋରଣ ।

ଯେଦିନ ଅତ୍ୟାଗୃହେର ସଉଧେ ସଉଧେ
ଅତ୍ୟାଗୃହିର ରୁଧିରେ ଜଳିବ ଦୀପାଳି,
ମହା ବିଭେଦେର ଦିକ୍‌ମଣ୍ଡଳେ
ମୈତ୍ରୀର କୋଟି ସୂର୍ଯ୍ୟ ଯେଦିନ ଉଇଁବ···
ବନ୍ଦନା ଥାଳି ଧରି ହୁଳହୁଳି
ଦେବେ ଯେଉଁଦିନ
ସଂହତିର ଦୁଲାଳୀ,
ଅବା ଏ ଜାତିର ଯେତେ କୁଳବଧୂ ଘୋଷାରେ,
ମଟ୍‌କୁଢ଼ ଘରେ ଶୁଭିବ ନୂତନ ହସାରେ···
ଆଶା-ଭାଷାହୀନ ମଣିଷ ଯେଦିନ
ମାତିବ ନୂତନ ନିଶାରେ
ସେହି ରକ୍ତିମ ଉଷାରେ,—
ଦୁଇଟି ଓଠରେ ଫୁଟିବ ଫୁଟିବ
ନୂତନ ଆଶାର, ନୂତନ ଭାଷାର
ନୂତନ ମୁକ୍ତି-କୁସୁମ,
ଶୀତ ଶୈତେ ' ଆସିବ ଉଷ୍ମ ।

ନିଶାବସାନର ଶାନ୍ତ ଗଗନେ
କାବ୍ୟତାରକା ଉଇଁବ,
ସବୁ ଜାଲିଆତି, ଧପ୍‌ପାବାଜିର
ନିଶାଣ ଯେଦିନ ନଇଁବ,
ବନ୍ଦୀ ଜାଗିବ କାରାଗହ୍ୱରୁ ଶୃଙ୍ଖଳ ଦିବ ତରଳି,
ହୃଦ-ହ୍ରଦ-ଜଳେ ଯେଦିନ ଖେଳିବ
ପ୍ରୀତି ମୈତ୍ରୀର ମରାଳୀ,
ସମ୍ବତ୍ସରର ଅଂକଶାୟିନୀ ଉଦରୁ
ବୀର ବିକ୍ରମେ ଜନ୍‌ମ ଲଭିବ
ଯେବେ ବିଦ୍ରୋହୀ ଛୁଆଟର,
ଯେଦିନ ରବିର ନୂଆ ସକାଳର
ନୂତନ ପହିଲି କୁଆଟରେ···
ଗତିର ଛଂଦେ ସେଦିନ ମିଳାଇ ଚରଣ,
ମହାନ୍ ପଥରେ
ତମରି ସାଥିରେ
ଛଂଦି ହାତରେ
ସାକ୍ଷୀ ମୁଁ ଦିବି ସେଦିନ···।
ରୁଦ୍ଧ-ଆବେଗେ
ବୁଦ୍ଧ ଉଠିବ
ଧରି ନିର୍ବାଣ ରାହାରେ···
ଅସମୟେ ଯେବେ ଆସିଛୁ ମରଣ
ଠିଆ ହୁଅ ସେଇ ବାହାରେ ।

ପୀଠାପୁର, କଟକ
(ଶିବରାତ୍ରି)
୧୯୫୯

□□

# ଅବାଂଛିତ

ତମର ନିନ୍ଦା ଆଙ୍କିଛୁ ମୋର
ଲଲାଟରେ ଜୟଟୀକା
ତମର ବାଧାକୁ ଇନ୍ଧନ କରି
ଏ ମୋର ବହ୍ନିଶିଖା—
ଜଳୁଛୁ ଜଳୁଛୁ ତମ କୁତ୍ସାର
ବତାସରେ ହୁତୁ ହୁତୁ—
ତମ ଆହ୍ୱାନେ ତମର କାବ୍ୟ-
ଗଗନେ ମୁଁ ଧୂମକେତୁ ।
ଦେଖା ଦେଇଅଛୁ ଶନିର ଶିଷ୍ୟ
ସେ କଥା କି ନାହିଁ ମନେ ?
ଦୂର ଅତୀତର ଇତିହାସ ଖୋଲି
ସେହି କଥା ଜାଣେ ଜାଣେ ।
ସେ କଥା ଜାଣଇ ଦେବୀ ବୀଣାପାଣି
ଅଗ୍ରଗୀ ଉତ୍କଳର
ସେହି କଥା ମନେ ରଖିଛୁ
କଟକ ସହର ଆକାଶ ତଳ ।

ତମର ଘୃଣାର ତୀବ୍ର ଗ୍ରବ୍ଭକ୍-ଚକ୍ରର ଶିଳାଲିପି
ଅଙ୍କିତ ମୋର ହୃଦ-ମନ୍ଦିରେ ପ୍ରତିଷ୍ଠା-କାତର ପାପୀ !
ମୋ' ନାମେ ତମର ମିଥ୍ୟାପ୍ରଚ୍ଛର ଈର୍ଷା, ଅସୂୟା ଯାହା,
ସବୁ ମୋ'ପାଇଁକି ଫୁଲ ହୋଇ ଫୁଟେ ଯଉବନ-ବନେ ଆହା !'

ଦେଶୀ ଭାରତୀର ମୂଳକ ସୀମାନା ସରହଦେ ଯେଉଁଦିନ—
ଦେଇଥିଲ ପାଦ, ରଚିବାକୁ ଟିକେ ଶାନ୍ତିର ତପୋବନ,
ଏ ମୋର କାବ୍ୟ-ପୁରୁଷ ନ ଥିଲା ସେତେବେଳେ ଏତେ ଉଗ୍ର
ଖୋଜୁଥିଲା ନିରାପଦ-ଆଶ୍ରୟ, ସୃଷ୍ଟି ପାଇଁକି ବ୍ୟଗ୍ର ।
ମନେଅଛି, ମନେଅଛି,
ଗୁଣ୍ଡିନେ ତମ ବିବ୍ରତ ମୋତେ କରିଥିଲ ମଶା ମାଛି ।

ପୃଥିବୀର ସାମାଜିକତା-ଦର୍ପ ମୋର ନିଭୃତ କ୍ଷେତେ—
ତମେ ସବୁ କରିଥିଲ ଦଂଶନ ଅସହାୟ ଭାବି ମୋତେ ।
ମୋର ପ୍ରଥମର ଅଙ୍କୁର ପରେ ନିଦିଥିଲ ଶିଳାଭାର
ତମେହିଁ ଦୂଷିତ କରିଥିଲ ମୋର ମରାଳ-ହ୍ରଦର ଜଳ ।
ମୋ’ ବାଗ୍‌ଦେବୀର ରକ୍ତ-କପୋଳେ ତମେ ମାରିଥିଲ ଜୋତା,
ନୀରବେ ସେ ଦିନ ଦେଖିଥିଲି ସବୁ ମେଲି ମୋର ଆଖିପତା ।
ଅସହାୟ ଶିଶୁ ପରି,
ଢାଳିଥିଲି ସେବେ ନେତ୍ର-ତଟରୁ ବେଦନାର ଲୁହ ବାରି ।

ଅଜ୍ଞାତେ ସେବେ ଯେଉଁ ବିଦ୍ୟୁତ୍
ମେଘର ଜଠର ତଳେ
ଅଜାଣତେ ମୋର ଯେଉଁ ବିଷଧର
କେତକୀ-କୁଞ୍ଜ ତଳେ,
ଲୁଚି ରହିଥିଲା ମଉନେ ନୀରବେ
ଜାକିଜୁକି ତାର ଫଣା,
ଅଜାଡିବା ପାଇଁ ବିଷ-ଫୁତ୍କାର
ପରଶୋଧ ପାଇଁ ଦେ’ଣା ।
ଅତୀତର ସେହି ବିଦ୍ୟୁତ୍ ଆଜି
ଝଲକର ରୂପ ନେଇ,
କେତକୀ-ବିତାନ ତଳେ ଆଶ୍ରୟ
ନେଇଥିବା ସେହି ଅହି,

ଯାହା ଧରଣୀରେ ଘୋଷଣା କରିବ:-
ପାଇଁ ନିଜ ବିଷବାଣୀ,
ଶୁଣାଇବା ପାଇଁ ବିଜୟ ବିଷାଣ
ହଠାତ୍ ଚମକ ଆଣି—
ଦେଖାଦେଇଛି ମୁଁ ତମର ଭାଷାରେ
ସେ ଦିନର 'ଟ୍ବେର', 'ଶେଲି',
ତମର ପାଇଁକି ନିନ୍ଦା ଯେତକ
ହୋଇଥିଲା ଫୁଲମାଳା,
ସେହି ମାଳା ଭିତରେ ଗଲା ମୋର ଗୀତ
ତମ ଆଖି ଆଗେ ହାସ୍ୟ !
ଜୀବଦ୍ଦଶାରେ ତମକୁ ଜିଣିଲି
ପୁଣି ତମ ପରାଜୟ !
ତମ ଅତୀତର ଚାବୁକ୍ ପ୍ରହାର
ଆଜି ମୋର ବୀଣାତାରେ—
ବାଜି ଅବିରତ; ନିଖିଳରେ ଡାକେ
ଆଗ୍ନେୟ ଝଙ୍କାରେ ।

ତମର ବାଧାରେ ମୁହିଁ ଗତିବାନ୍ ସମାଜର ଜାଠ ଦଳ,
ତମ ଅଭିଶାପେ ଆୟୁଷ୍ମାନ ମୁଁ ଶୋଷଣ ଶତ୍ରୁଧର ।

ତମ ସମାଜର ମଠ-ମନ୍ଦିର, ଧର୍ମ, ଶାସନ ଭିତ !
ଭାଙ୍ଗିବା ଛଡ଼ା ଏ ମୋ' କଲମର କାମ କିଛି ନାହିଁ ନାହିଁ ।

ମୁଁ ନୁହେଁ ବୁଦ୍ଧ, ଯୀଶୁ,
ଜନ୍ମ ମୋହର ତମର ଈର୍ଷା, ଆସୂୟା ନିନ୍ଦା-ବର୍ଷୁଁ ।

ନିପଟ ମୂର୍ଖ, ଅନାଥ କିଶୋର
ଘୂରୁଥିଲି ପଥେ ପଥେ,
ତମ ବାଧା, ତମ ଅବରୋଧ ମୋତେ
କାବ୍ୟର ଜୟରଥେ—
ବସାଇଛି ଆଣି, ହସାଇଛି ପୁଣି
ଏ ସାରା ଜୀବନ ପାଇଁ
ତମର ବୋକାମୀ ଦେଖି ଲଜ୍ଜାରେ
ମୁଣ୍ଡ ମୋ ଯାଏ ନଇଁ ।

ଦୀନ ଓଡ଼ିଶାର କାବ୍ୟ ଗଗନେ
ହାୟ ମୁଁ ଅଲୋଡ଼ା-ତାରା,
କରେ ମିଟି ମିଟି, ଅନ୍ତର ମମ
ବେଦନାର ତାପେ ଭରା ।
ଯେଉଁ ଆଲୋକ ମୁଁ ବିକୀରଣ କରେ
ପ୍ରତିଟି ପଲକପାତେ,
ମାନବିକତାର ଯେ ବ୍ୟଥା-ବେଦନା
ମୋହର କବିତା ଗୀତେ;—
ଚାହୁଁଛି, ତାହାକୁ ହେ ରସବନ୍ତ
ପାଠକ-ପାଠିକା ମୋର,
ନିଜ ନିଜ ଆଶାଭଙ୍ଗର ଲିପି
ଯଦି ମନେ କରିପାର;
ତେବେ ହେବ ମୋର ପ୍ରାଣେ ସାନ୍ତ୍ୱନା
ହେବ ତା ସାର୍ଥକତା,
ସାର୍ଥକ ହେବ ମାନବତା ପାଇଁ
ମୋର ବିଦ୍ରୋହ-ବ୍ୟଥା । ※



※ କବିତାଟି କଟକ ବେତାରକେନ୍ଦ୍ରରୁ ଗତ ତା୨୭।୫।୭୦ରିଖରେ ପ୍ରସାରିତ ହେଲାପରେ ପାଠକ ମହଲରେ ତୀବ୍ର ଆଲୋଡ଼ନ ଓ ପ୍ରତିକ୍ରିୟା ଦେଖା ଦେଇଥିଲା । ସେଥି ଭିତରୁ କବି ବୈକୁଣ୍ଠନାଥ ପଟ୍ଟନାୟକଙ୍କ ପ୍ରତିକ୍ରିୟାଟି ଲକ୍ଷଣୀୟ । (ପୃଷ୍ଠବନ୍ଧର 'ଚିଠିପତ୍ର' ଦ୍ରଷ୍ଟବ୍ୟ)

# ତାଡ଼ି-ସମ୍ଭାଷଣ

[ମହାତ୍ମା ଗାନ୍ଧୀଙ୍କ "ନିଶା ନିବାରଣ" ସ୍ୱପ୍ନ "ନିଶା ସଂପ୍ରସାରଣ"ରେ ପର୍ଯ୍ୟବସିତ ହେଲାପରେ ମଦ ବର୍ତ୍ତମାନ ଓଡ଼ିଶାରେ ଈଶ୍ୱର ପରି ସର୍ବବ୍ୟାପୀ । ଏ ଅବସ୍ଥାକୁ ଉପଲବ୍ଧି କରି ପୂର୍ବର ଖଜୁରି ରସ ଅର୍ଥାତ୍ ତାଡ଼ି ହୃଦୟରେ ଯେଉଁ ଅସୀମ ଦୁଃଖ ଦେଖା ଦେଇଛି, ତାରି ଚିତ୍ର ଏ କବିତା.....]

ତାଡ଼ି ଦିନେ ଡାକି
କହିଲା ମଦକୁ, ଭାଇରେ,
ତୋ ଭାଉ ବଢ଼ିଲା
ମୋତେ ପଚାରୁନି କେହିରେ !
ଦେଶୀ ଓ ବିଲାତି ବେଶରେ
ଦିନ ରାତି ତୁହି ଜଣେ ହାତମାରୁ
ମରେ ମୁହିଁ ଉପବାସରେ ।

ମୋ ମାଲିକ ଥିଲା ପୂର୍ବେ ଶିଅଳ
ତୋ ମାଲିକ ଥିଲା ହାଡ଼ିଆ
ଲିଂକ୍‌ରୋଡ୍ ଛକେ, ବିହାରି ଦୋକାନେ
ତୁହି ଚଳ ଚଳ ବଢ଼ିଆ ।
ପିମ୍ପା, ବୋତଲେ ତୁହି ଆରାମରେ ଥାଉରେ,
ଠିପି ଖୋଲା ହେଲେ ଦୁନିଆ ହୁଅଇ ତାଉରେ !

ଅତି ଗୋପନରେ ତୋର ଗତାଗତ
ଚଳ ଚଳ ଶୁଭ୍ର, ତରଳ,
ତୋହର ପରଶେ ସବୁ 'ଭୁଲ୍' ହୁଏ
କୁଟିଳ ହୁଅଇ ସରଳ ।
ଖୋଟ୍ ବେଳ ହେଲେ ଶାସକେ ଜିତାଉ ସିନାରେ
ସତକୁ ଏକା ରୁ କରନ୍ତାରୁ ମିଛ
ପେଲୁ ରାଜନୀତି-ପଣାରେ ।

ତୋତେ ପିଇ ଦେଲେ
ଉପିଆ, ଫକର୍, ନଟିଆ
ରାତିଅଧେ ବୁଲି ବାହ୍ରାଚନ୍ତ୍ର 'ଗୁରବାଟିଆ' ।
ଭଦ୍ରଲୋକଙ୍କୁ 'ଶୁଭ' ଶବଦେ
ଡାକବାକୁ ଦେଉ ଖିଆରେ,
ଦୁନିଆର ମାଆ-ଭଉଣୀ ଜ୍ଞାନଟା
ଲୋପ ହୁଏ ତୋର ନିଶାରେ ।

ଆଗେ ମୁଁ ଖଜୁରି ଗଛୁଁ ଝରୁଥିଲି
ପଶୁଥିଲି ବୋହୂ ଓଦରେ,
ଖୋଜ ବିକଳରେ ମୋତେ ପିଉଥିଲି
ମଣିଷ ପତର ଠୋଲିରେ ।
'ନୀରା' ରୂପେ ଏବେ ତାଡ଼ି ମୁଁ ରହୁଛି ନୀରବ
ହରାଇଛିଁ ତେଜ, ହରାଇଛି ମାନ, ଗରବ ।

ଗାନ୍ଧୀ କହିଲେ "ନିଶା ନିବାରଣ"
ଆଗେ ହେଲି ମୁଁ ତା ଶିକାର
ଏଇ 'ତାଳଗୁଡ଼ ସମିତି' ବାଲାଏ
କରିଦେଲେ ମୋତେ ବେକାର ।

ଗାନ୍ଧୀଙ୍କୁ ବୁଢ଼ା ଚିତା କାଟିଦେଲୁ ମନ୍ଦରେ,
ଗ୍ରାମ ଜନପଦ ପୁଣି ମଫସଲ, ସଦରେ ।

ଓଡ଼ିଶାରେ ଏବେ ବୁଢ଼ା 'ସ୍ୱତନ୍ତ୍ର'
ପଢ଼ୁଛେ ଢେ଼ର ସ୍କୁଲରେ,
ନାହିଁ ତ ବାରଣ, ନାହିଁ 'ନିବାରଣ'
ମହାରାଜା କଲ୍ୟାଣରେ ।

ଯଦି ପାଇଥାଏ 'ସ୍ୱାଧୀନତା' କିଏ
ମଦ, ତୁ ପାଇଛୁ ତାହାରେ,
ମରିନି ଗାନ୍ଧୀ, ତରି ତ ଯାଇଛୁ
ସୁରା-ସମୁଦ୍ର ଅହାରେ !

। କଟକ ।
୧୬ ଜୁଲାଇ, ୭୦



# ହେ ସମବୟସୀ !

ହେ ସମବୟସୀ, ପାଇଲି ତମର ଚିଠି
ତମେ ପଚାରିଛ ଅଦ୍‌ଭୁତ କଥା ଏକ,
କାବ୍ୟଲତାରେ ପ୍ରୀତିର କୁସୁମ ଫୁଟି—
ଉଠେନାହିଁ କିଆଁ ? କାହିଁକି ମୁଁ ବେରସିକ ?

କାହିଁକି ମୁଁ ନାରୀ-ବିଦ୍ୱେଷୀ ଜଣେ କବି ?
ଛାଡ଼ିଛି କିଆଁ ମୁଁ ରସଶୃଙ୍ଗାର କଥା ?
କାହିଁକି ତୋଳେ ମୁଁ ଦ୍ରୌପଦୀର ଭୈରବୀ ?
ଭୁଲିଛି କିଆଁ ମୁଁ ପ୍ରେୟସୀର ପ୍ରଣୟତା ?

ଅପରିଚିତା ଗୋ, ତମକୁ ଦେଖିନି କେମା
ଦେଖିବାକୁ ମୋଟେ ବାସନା ତ ନାହିଁ ମୋର,
ପୌରୁଷ ମୋର ତମ ନାରୀତ୍ୱ ସୀମା—
ମାତୃବନ୍ଦି ଭୁଲେ, ସତ୍ୟ ଏ ଶତବାର ।

ତମ ଅନୁମାନ ଠିକ୍, ମୁହିଁ 'ବେରସିକ'
'ରସିକତା' ପାଇଁ କାହିଁ ମୋର ସମ୍ବଳ ?
ପ୍ରଣୟ-ସିଂହଦ୍ୱାରେ ମୁହିଁ ହତବାକ
ଶୁଣି ଏକାଧିକ 'ରସିକ'ର କୋଳାହଳ ।



୧୦ ମଇ, ୭୦

# ଶ୍ୱାନ-ସମ୍ଭାଷଣ

ଏ ମୋର ଦେଶର ହେ ବୁଲା କୁକୁର ଦଳ
 ଲାଞ୍ଛିତ ଚିର, ପାଉଁଶଗଦାର ବାସୀ !
ତୁମେ ଯାଯାବର, ଚିର-ପରବାସୀ ଦଳ
 ନିର୍ଜନ ରାତେ ଉଜାଗରେ ଥାଅ ବସି ।

ତୁମେ ଅଛ ଖାଲି ମାଗଣା ପହରାଦାର
 ନିରାପତ୍ତାର ତୁମେ ତ ରକ୍ଷାକାରୀ,
ତୁମ ଦେହେ ଖାଲି ଚିଂକ ତ ଭରପୂର
 ଅନାହାରୀ ତୁମେ ତଳିଆ କର୍ମଚାରୀ ।

ମଶାଣିପଦାରୁ ପୁର, ଜନପଦ ଯାଏଁ
 ପଥ-ପ୍ରାନ୍ତର ପଲ୍ଲୀ-ନଗର, ଭରି,
ହୋଟେଲ ନଳାରୁ ନର୍ଦ୍ଦମା ତଳ ଯାଏଁ
 ସବୁଠାରେ ତବ କଂଠ ତ ଧ୍ୱଏ ବାରି !

ଏବେ ଯେ ନକଲି ଚାନ୍ଦ ଉଠିଲା ନଭେ
 'ସ୍ପୁଟ୍‌ନିକ୍' ନାମେ ମସ୍କୋ ଆକାଶ ଚିରି,
ନଭୋମଂଡ଼ଳେ ପ୍ରଥମ ଯାତ୍ରୀ ଭାବେ
 ତୁମରି ଜାତିର ଦେଲା ଜଣେ ପ୍ରାଣବଳି ।

'କୁକୁରରକ୍ଷା ସମିତି' ଗୁଡ଼ାଙ୍କ ଡାକ
ସେ ଦିନ ଶୁଭିଲା ନଗ୍ର-ଓ୍ୱାସିଂଟନେ
"ଏକଯୁଟ ହୁଅ ବିଶ୍ୱ-କୁକୁର ଯାକ"
ତମ ପାଇଁ ତାର ବେଦନା ଜଗିଲା ମନେ । †

ଓଡ଼ିଶାର ଆଜି ତମେ ତ ବାଡ଼ଆ ଖାଅ—
ଆହେ ଅନାବିଳ 'ଲାଇକା' ବଂଶଧର !
ତମଠାରେ ନାହିଁ ମନ୍ତ୍ରୀ ହେବାର ମୋହ
ନିପୀଡ଼ିତ-ଚିର, ତମେ ତ ନିର୍ବିକାର ।

ତମେ ତ ନିଷ୍ଠୁର ସହିଲେ ।—କୁକୁର ଜାତି
ନିର୍ଜନ-ଘନ ଗିରିର ଯାତ୍ରୀ ଦଳ,
ଦ୍ୱାପର ଯୁଗରେ ତମେ ପରା ଥିଲ ସାଥି
ସ୍ୱର୍ଗାରୋହଣ କାଳରେ ଯୁଧିଷ୍ଠିର !

କହିବ କି ଅରେ କାହିଁକି ପୁହାଅ ରାତି—
ରାଜ ରାସ୍ତାରେ—ନିଜ ପରିବାର ଧରି ?
ମୂଖରିତ କର ସୁବୃଦ୍ଧ ନିଶାର ଗ୍ରୁତି
ତମରି ଜୀବନେ ଦୁଃଖ-କଷଣ ଭରି !

ଋନ୍ଦ୍ରବିହୀନ ଅନ୍ଧାର ତଳେ ଯେବେ
କାଳାଘନ ତଳେ ବାଜଇ ବଜ୍ର-ବୀଣା,
ଚକ ଚକ ଚକ ଚପଳା ଚମକେ ନଭେ
ଶଙ୍କିତ ତଳେ ତମ ଡାକ ଯାଏ ଶୁଣା ।

---

† ସୋଭିଏଟ୍ ସ୍ପୁଟନିକର କୃତ୍ରିମ ଉପଗ୍ରହ ଆରୋହୀ ଶ୍ୱାନୀ "ଲାଇକା"ର ମୃତ୍ୟୁ ଘଟିବା ପରେ ସମ୍ବାଦପତ୍ରମାନଙ୍କରେ ପ୍ରକାଶ ପାଇଲା, ଆମେରିକାରେ ଥିବା 'ଆନ୍ତର୍ଜାତିକ କୁକୁର-ରକ୍ଷା ସମିତି' ଏଥିଲାଗି ଉଦ୍‌ବେଗ ପ୍ରକାଶ କରିଛନ୍ତି ।—ଲେଃ

ତମେ ଅଭଙ୍କ ପର୍ଯ୍ୟଟକର ଦଳ
   ହେ ଚର-ଯାତ୍ରୀ, ହେ ମୋର କୁକୁର ଆଂହେ !
ମାଂସାଶୀ ଚର, ଧାର୍ଘରତର ଦଳ
   ଶୁଣିଥିବ କେତେ "ରାମ ନାମ ସତ୍ୟ ହେ" !

"ସତ୍ୟ" ଆଜି ତ ସେହି "ରାମନାମ" ଏଥେ
   ମିଥ୍ୟା ସେଥିରେ ଟିକିଏ ମାତ୍ର ନାହିଁ,
ନାଲିପଗଡ଼ିଆ ଜାଠ ଦେଖି ରାଜପଥେ
   ଶ୍ୱାନବନ୍ଧୁ ହେ, ଭୋକିବାକୁ ବେଳ ନାହିଁ ।

ଖଣ୍ଡିତ ଏଇ ଓଡ଼ିଶାମୂଲକେ ଆଜି —
   ପଶିଚି ମୃତ୍ୟୁ—କାହ୍ନଣା ଯାଏ ଶୁଣା,
ନାଳିଫିଡା ତଳେ ସଦ୍ୟ-ଶବର ଭୋଜି
   କୁତ୍ତା ହେ ତମେ ଦେଖି ତ ପାରୁନ ପିନା !

ଅକାଳରେ ତମ ଅଙ୍ଗୁ ଉପୁଡ଼େ ଲୋମ
   ନିର୍ଦ୍ଦୋଷେ ଖାଲି ଗୋଗଛବାଡିଆ ଖାଅ,
ଟ୍ରେଞ୍ଚା ହୁଏ ଗୋଡ଼, ପିଠିରୁ ଉଠଇ ଚମ.
   ତମେ ହନ୍ହସ୍ତୁ, ତମେ ଖାଲି ସାରମେୟ ।

ତମର ବେଦନା କେହି ତ ବୁଝିବେ ନାହିଁ
   କାହାଗେ କହିବ, ଦୁଃଖ ଶୁଣିବ କିଏ ?
କୁକୁର ହେ ତମ ସଂଗ୍ରାମ ସରନାହିଁ
   ନୀରବ କାହିଁକି ଆଜି ଏତେବେଳେ ଆହେ ?

ଆଜି ଏତେବେଳେ ବୁକୁର ରୁନ୍ଧାବେଗେ
   ଜାଗରେ କୁକୁର ! ବାଛୁନିଅ ନିଜ ରାହା,
ତମ ପଟୁଆର ଛୁଟୁ ଶବାଧାର ଆଗେ
   ଆଖିର ଲୁହରେ ଜାଳି ବିଦ୍ରୋହ-ନିଆଁ !

। କଟକ ।
୩୦ ଜାନୁଆରି, ୫୯

>X<

# ଖଦଡ଼ ଓ ଜାଲ-ପରମିଟ୍

ସହରର ଛକର ଗୁଆ ଦୋକାନରେ ଯେବେ –
କଣ୍ଠକୁ ଓଦା କରୁଥିଲି ଗୁଆ ପାନେ,
କାନରେ ବାଜିଲା, "ସଭାରେ ତ ଯୋଗ ଦେବେ –
କାଲି ସଂଧ୍ୟାରେ ଭାଇ ଓ ଭଉଣୀମାନେ !

ଆଲୋକରେ ଘର ସଜାଇ ରଖ ହେ ଭାଇ
କାଲି ତ ପଡ଼ୁଛି ରି-ପବ୍ଲିକ୍ ଦିନ,
କାଲି ପତାକାତଳେ ଏକଯୁଟ ହୁଅ ଯାଇ
କାଲି ଏ ଜାତିର ଶପଥ ନବାର ଦିନ ।

କାଲିକା ସଭାରେ ତାଂକ ଭାଷଣ ଦେବେ
ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ,
ବକ୍ତୃତା ଛଳେ ନୂଆ ବାଟ ଦେଖାଇବେ
କାଲିକା ସଭାରେ ସିନେମା ବି ଦେଖା ହେବ ।

କାଲି ଜାନୁଆରୀ ଛବିଶି ତାରିଖ ସିନା
କାଲି ସାଧାରଣତନ୍ତ୍ର ଦିବସ ଆହେ,
ଘର ମଥାନରେ ଉଡ଼ାଅ ଜାତୀୟ ବାନା"—
ପ୍ରଚାରବିଭାଗ ଗାଡ଼ି ଡାକି ଡାକି ଯାଏ ।

ସେଇ ଶବ୍ଦଟା ଏକାନ୍ତେ ପଶି ମୋ ଗଳା —
ସେକାନେ ବାହାର—କିଛି ନ ରହିଲା ମନେ,
ଦୋକାନ, ବଜାରେ ବିଦ୍ୟୁତ୍ ବତିମାଳା—
ଜଳି ଉଠୁଥିଲା ସେଇ ଦିବା ଅବସାନେ ।

ଟାଉନ୍ ବସ୍‌କୁ ଚାହିଁ ଆସି ହେଲି ଠିଆ—
ସହର ଛକରେ—ସେଦିନ ସନ୍ଧ୍ୟାବେଳେ,
ମୁଖରିତ ହୋଇ ଉଠିଥିଲା ତାର ହଆ
ସାନ୍ଧ୍ୟଆସର, ଜନତାର କୋଳାହଳେ ।

"ବାବୁ !" ବୋଲି ମୋର ପଛରୁ ଶୁଭିଲା ଡାକ
ଚମକି ଚାହିଁଲି ଯୁଗଳ ଲୋଚନ ମେଲି,
ହାତରେ ଯଷ୍ଟି, ଦେଖିଲି ବୃଦ୍ଧ ଏକ
ଅନାଇଁଛି ମୋତେ ସତେ ବା ଯାଚକ ପରି !

ଜରା-ପ୍ଲାବିତ ମୁଖମଂଡଳ ତାର
ଉର୍ଣ୍ଣନାଭର ଜାଲପରି ଗାରମସ୍ତ,
ଲଂବିଯାଇଛି କପାଳେ ଢନ୍ଦିଟା ଗାର
ଘୋଷି ଘୋଷି ଅବା ଜୀବନର ଗାନଜସ୍ତ !

ପାଦ ଦୁଇଟା ତା ବଂକା ଧନୁର ପରି
ଢେଂଗା ନୁହଇ, ନୁହଇ ଅଥବା ଗେଡ଼ା,
ବାଡ଼ି ଠିକ୍ ଦେଇ, ଅଂଟା ସଳଖ କରି
ହାତ ଠାରି ମତେ ପାଖକୁ ଡାକିଲା ବୁଢ଼ା ।

ପାଖ ଦୋକାନଟା ବଂଦ ଥିଲା ସେ ଦିନ
କାହିଁକି କେଜାଣି; ଜାଣେନା ମୁଁ ଭଲ କରି !
ଘଡ଼ିକୁ ଚାହିଁଲି ସାତଟା ପଞ୍ଚାବନ
ଟାଉନ୍ ବସ୍‌ଟା ଆସିବାକୁ ଅଛି ଡେରି ।

ସେହି ଦୋକାନର କାଠ ତକ୍ତାର ଧାରେ—
ବସିଲା ବୃଦ୍ଧ, ଠିଆ ମୁଁ ତା' ଆଗେ ହେଲି,
ଏକ ପାଦରଖି ଦୋକାନ ପାହାଚ ପରେ
"କଅଣ ମଉସା ?" ବୁଢ଼ାକୁ ପ୍ରଶ୍ନ କଲି ।

ଗଳା ସଫାକରି କହିଲା ବୃଦ୍ଧ, "ବାବୁ !···
ମୋ' ଘର ଏଠିକି ହବ ଷୋଳକୋଷ ବାଟ,,
ଏସାଲେ ମୋ ବଳ ଟଢ଼ିଆ ପଡ଼ିଚି ସବୁ
କଅଣ କରିବ, ପାଉନି ବୁଦ୍ଧି ବାଟ ।

ହିଦସ୍ତ୍ରାସନ ଫସଲ ଯା ଫଳିଥିଲା—
ସେଇ ଆକାଯାକେ ଠୁଳ ତ ଚଳୁଚି ଜାଣ,
ଗଲା ସାଲେ ମୋର ଶଗଡ଼ ଅକାମୀ ହେଲା
କକର୍ଥନାରେ ମେଣ୍ଟାଏ ନୁଜୁ ତ୍ରାଣ ।

ନାଲି ଦ'ଠା ପାଇଁ ହେଲଣି ମୁଁ ହରକତ
ଷହାଷିବାଗର ବାବୁ ଦେବେ ପରମିଟି—
କହିବାରୁ ମତେ ଆମ ଗାଆଁ ଦାମାରଥ
ବସିବା ଥାନରୁ ବାବୁ ମୁଁ ଆଇଲି ଉଠି ।

ନେହୁରୀ ନମତ ହେଲେ ବି ଶୁଣିଲେ ନାହିଁ
ଦାଇଦନ ହେଲା ଆସି ପଡ଼ିଥିଲି ସେଠି,
ପେଟ ଖେଂଚୁଚି, ଭିଡ଼ି ତ ଧରିଚି ବାଇ
ଝଣ୍ଡି ଏ ବାବୁ ଦିଅ ନାଲି-ପରମିଟି !

ଏ ବରଷ ବିଲେ ନ ପଡ଼ିଲେ ଜମା ଝଡ
ଫସଲ ହବନି, ଭୋକରେ ମରିବେ ଛୁଆ,
ବଳ ନାହିଁ ଆଉ, ଅଚଳ ହେଲଣି ରଥ
ବୁଢ଼ା ଦିନେ ଆଉ ପାରିବି ମୁଁ ଖଟ-ବୁହା ?"

ବୁଢ଼ା କଥା ଶୁଣି ବେଦନା ଜାଗିଲା ମନେ
ତା ସାଥେ ଉଠିଲା ବୁଦ୍ଧ-ହସଟେ ଖାଲି,
"ପରମିଟି ମୁହିଁ ଦିଏ କେ କହିଲା ? ଶୁଣେ !"
ଏଇ କଥାଟା ମୁଁ ବୁଢ଼ାକୁ ପ୍ରଶ୍ନ କଲି ।

ସାଥେ ସାଥେ ବୁଢ଼ା ଉତ୍ତର ଦେଲା, "ବାବା !
ଝଦଡ଼ ନୂଗା ତ ଆପଣ ପିନ୍ଧିଛନ୍ତି,
ମନରେ ଭାବିଲି, କାଲେ ଦାନ୍ତଥିବେ ଅବା !
ଦେଲେ ତମଠେଇଁ ସବୁଦିନେ ହେବି ଋଣୀ ।"

ବେଳ ତ ନ ଥିଲା କହିବାକୁ ଆଉ କଥା
ଟାଉନ୍ ବସ୍ ଟା ଠିଆ ହେଇଗଲା ଆସି,
ବୃଦ୍ଧ ମନରେ ଦେଇ ଏକ ଗୁରୁ-ବ୍ୟଥା
ବସ୍ ଭିତରେ ଯାଇ ମୁଁ ପଡ଼ିଲି ବସି ।

ଚକ ବୁଲିଗଲା, ବସ୍ ଛୁଟିଲା ଆଗେ
ବେଦନା, ଦୁଃଖେ ମନ ମୋ ଉଠିଲା ପୂରି,
ନାଚି ତ ଉଠିଲା ଲୋଚନ ଯୁଗଳ ଆଗେ—
ବୁଢ଼ାର ମୁହଁଟି ଚଳଚ୍ଚିତ୍ର ପରି ।

ଦୀର୍ଘ ଶୁଆସ ଛାଡ଼ି ମୁଁ ଭାବିଲି ଖାଲି
ବୁଢ଼ାର ଯେ ନାଲି ପଟ୍ଟିମିଟି ନିବେଦନ,
ଜାନୁଆରି ମାସ ଛବିଶି ତାରିଖ, କାଲି—
ପାଇଁ ହେବ ଏକ ଆଗ୍ନେୟ-ଆହ୍ୱାନ ।

। କଟକ ।
୨୫ ଜାନୁଆରି, ୫୯



# ହେ ମହାମାନବ !

( ଗାନ୍ଧିଙ୍କୁ… )

ତୁମେ ଏ ଜାତିର ମହାନ ଆଲୋକ, କ୍ଷତଠାରୁ ବଳି ପ୍ରିୟ
ଚିର ଶାନ୍ତିର ଧୀର ବସନ୍ତ
ତୁମେ ତ ସତ୍ୟ ମୂର୍ତ୍ତି ମନ୍ତ୍ର
ତୁମେ ପବିତ୍ର ଶୁଭ୍ର-କପୋତ, ତୁମେ ତ ସୂର୍ଯ୍ୟୋଦୟ ।

ସାରା ଦୁନିଆର ଶହୀଦ୍ ପ୍ରେମେ
ଆହେ ଗନ୍ଧବାନ, ତୁମରି ଚରଣେ
ପରାଧୀନତାର ଦୁର୍ଗ-ତୋରଣେ
ମୁକ୍ତିକାମୀର ନୟନେ ନୟନେ ତୁମେ ବିପ୍ଳବ-ନିଆଁ,
ତୁମେ ମାନବର ମହାନ-ମୈତ୍ରୀ
ତୁମେ ନୈତିକ ଝଡ଼ର କେନ୍ଦ୍ରୀ
ତୁମେ ଶାନ୍ତିର ମହା ନିକେତନ, ଚିର ବରାଭୟ ଆହା :

ପୃଥ୍ୱୀମାତାର ତୁମେ ତ ଅଶ୍ରୁ, ବିପ୍ଳବୀ ଯୁଗଯାତ୍ରୀ,
ମାନବବାଦର ଅଜେୟ ପ୍ରହରୀ, ସ୍ୱର୍ଣ୍ଣ ଶେଖର ଯାତ୍ରୀ ।
ତୁମେ ମୁକ୍ତିର ମୁକ୍ତ-କୃପାଣ
ନାନାଭାବେ ତୁମେ ଦିଅ ଦରଶନ
ସ୍ୱାଧୀନତାକାମୀ, ମୁକ୍ତିସେନାଙ୍କ ଶିବିରେ, ରଣାଂଗନେ
ତୁମରି ବିଜୟ-ବୈଜୟନ୍ତୀ ଭାରତର ଆସ୍‌ମାନେ ।

ପବ୍ୱନତାର ପ୍ରିୟ ପଦାବଳୀ, ତମେ ମହା ଭବିତବ୍ୟ
ଈଶ୍ୱରୁ ବଳି ତମେ ଉପାସ୍ୟ, ଧରଣୀର ମହାକାବ୍ୟ ।
ମହା ଭୂଗୋଳର ଶାସକସୃଷ୍ଟ କାରାଗହ୍ୱର ତଳେ
ଧୀରେ-ଘନୀଭୂତ ହୁଏ ଯେଉଁ ଝଡ଼
ଛୁଟିବା ପାଇଁକି ବିଶ୍ୱ-ଆକାଶ କୋଳେ,
ଧରଣୀର ନାଭିକେନ୍ଦ୍ର ଅଗ୍ରାଇ
ପବନର ପ୍ରହରନ୍ଧ୍ର ଭରାଇ
ଆଜି ଦେଶେ ଦେଶେ, ନଗରେ ନଗରେ ଉଠେ ଯେ ମୁକ୍ତିଗୀତ
ସେହି ଗୀତକାର ତମେ ଗୀତକାର
ଉପନିବେଶିକ-ଶୋଷଣର ମହାଶ୍ରାନ୍ତି ।

ସମ୍ବଳହୀନ ଶୀର୍ଣ୍ଣ ମାନବ ଅନାଡ଼ମ୍ବର ବେଶେ
ତମେ ଆସିଥିଲ ଏ ଜାତିର ମେଳେ, ତମର ଦୀର୍ଘଶ୍ୱାସେ —
ଜଳିଗଲା ଯେତେ କଳୁଷ-କାଳିମା
ତମର ମହାନ୍ ନିର୍ଦ୍ଦେଶନାମା
ଯୁଗଯୁଗାନ୍ତ ବନ୍ଧନ ଦେଲା ଖୋଲି,
ହେ ପ୍ରିୟ 'ମୋହନ', ତମେ ଏ ଜାତିର ଜୀବନ୍ତ-ପଦାବଳୀ !

ତମ ଚିତାଗ୍ନି-ଧୂଆଁର ମୟୂର ବିଶ୍ୱ ଆକାଶ ତଳେ
କଳାପ ମେଲାଇ ନାଚେ ଅବିରତ
ପରାଧୀନତାର ଯେତେ ଗିରିପଥ
ବିଷମ-ତାଳର ନୃତ୍ୟଛନ୍ଦେ ଭାଜିପଡ଼େ ଅବହେଳେ ।

ସାରା ଦୁନିଆର ମୁକ୍ତି ସେନାନୀ
ତମର ଚିତାର ପାଉଁଶ ମୁଠିରେ ବୋଳି,
ତମର ବୁଲେଟ୍-ବିଦ୍ଧ-ବୁକୁର —
ରୁଧିରେ ରୁଧିରେ ପତାକାକୁ କରି ନାଲି,
ଅଧୀରେ ନିଜର ପାଉଦଏ ମୁଠି ଭରାମୁକ୍ତିର ଗାନେ,
ତମେ ଭାରତର ମହା ତର୍ଜମା, ତମେ ମୁକ୍ତିର ମାନେ ।

ତମକୁ ସୁମରୁ ଝଡ଼ର ବାହୁନା ମୁକ୍ତିଶିବିର ତଳେ
ବିଶ୍ୱ-ଭାରତୀ ଧରୁପଛେ ନେଇ ତମକୁ ତା ନିଜ କୋଳେ,
ନିଖିଳର ପଛେ ହୁଅ ତମେ ଧନ
ତମେ ଭାରତର ଗର୍ବାଭିମାନ
ତମେ ଯମୁନାର ଜଳ-କଲ୍ଲୋଳ, ଗଂଗାର ଜଳବେଣୀ ;
ତମେ ମୁକ୍ତିର ଲଳିତ-ଲଗ୍ନ
ତମର ଘୋଷିତ ସାମ୍ୟ, ଶାନ୍ତିବାଣୀ—
ଏଇ ଏ ଭାରତ-ଭାରତୀ ଜଠରୁ, ଜନ୍ମ ତାହାର ସିନା
ତମେ ଭାରତର ରୁଦ୍ର-ଡମରୁ, ମହାଶ୍ୱେତାର ବୀଣା ।

ସେଦିନର ସେହି ତମ ଷତାକ୍ତ ବିଦାୟ ସଂଧ୍ୟା ଭୁଷ୍ଟା
ଆଜି ଏ ଧରାର ଗଣମାନସରେ ମେଲିଛି ତାହାର କାୟା ।
ରାଜଘାଟ ତଳେ ତମେ ତ ନୀରବ
ନିଖିଳ ଜଠରେ ତମ କଳରବ
ଅବିରତ ଯାଏ ଶୁଣା
ପ୍ରଣାମ, ପ୍ରଣାମ ! ହେ ଚିର ମହାନ୍, ହେ ଚିର ଅଗ୍ନିବୀଣା !

[ ଆକାଶବାଣୀ, କଟକ କେନ୍ଦ୍ରଙ୍କ ସୌଜନ୍ୟରୁ ]

। କଟକ ।
୧୯ ଏପ୍ରିଲ, ୬୯

# ଏଇ ମୋ କବିତା

। ୧ ।

ପତ୍ରିକା ପାଇଁ
କବିତା ମାଗିଛନ୍ତି ବନ୍ଧୁ ସଂପାଦକ,
ଲେଖିତ ପାରନି ମୋତେ,
ଆଠଦିନ ହେଲା
ମୁଣ୍ଡ ଘୂରୁଛି, ମନ ଖାଲି ଦକ ଦକ
ଛାତି ତଳୁ କୋହ ଉଠେ ।

ଜୀବନ ଅସଂଗ୍ରା-
ବନ୍ଧୁର ପଥେ ଚାଲି ଚାଲି ଥକିଲିଣି
ଅବଶ ହେଲାଣି ପାଦ,
ଦୁଃଖ, କଷଣ,
ଦୁର୍ଭାବନା ମୋ ଜୀବନ ଖାଉଛି ଚୂର୍ଣ୍ଣି
ଆଖିରେ ତ ନାହିଁ ନିଦ ।

ଚାରିମାସ ହେଲା
ଘରଭଡ଼ା ବାକି, ନାସ୍ତି ପକେଟେ ଖଡ଼ା,
ମୁଣ୍ଡ ମୋ ଯାଏ ଘୂରି,
ନିଇତି ସକାଳୁ
ଉଠିଲା ବେଳକୁ ଚାନ୍ତ୍ରା ମୋ ଘରଭଡ଼ା
ଲଜ୍ଜାରେ ଯାଏ ମୁଁ ସରି ।



* ପଥପ୍ରାନ୍ତର କବିତା

ପାନ ଦୋକାନୀର
ବାକ୍ସି ମୋ ଉପରେ କୋଉଦିନୁଁ ଟଂକାଟେ,
ମାଗୁଚ ତ ସିଏ ନିତ,
'ଅଗଣା' ଧୋବାର
ଟଂକା ଦୁଇଟା—ଚଲିଭ ଦଉନି ବାଟେ
ମନ ତଳେ ଜାଗେ ଖିତ ।

। ୨ ।

ଯାଇଥିଲି ଆଜ
ପ୍ରକାଶକ ପାଖେ—ପଚ୍ଚରିଲି ଯୋଡ଼ି କର—
"ଛାପିବେ ଖଣ୍ଡେ ନାହିଁ ?"
ଉତ୍ତର ହେଲା—
"ପାଠ୍ୟକିତାବ ପାଇଁ ମୋଟେ ନାହିଁ ଡର"
ଚଶମା ଫାଙ୍କେ ଚାହିଁ ।

"ଆଉ କୋଉଦିନ
ଆସିଲେ ଆପଣ—ଆଣିବେ ପାଣ୍ଡୁଲିପି
ପଢ଼ି ମୁଁ ଦେଖିବି ତାକୁ,
ଛାପିବି କି ନାହିଁ
ଦୁଇଦିନପରେ ଜଣାଇବି ଚିଠି ଲେଖି
ପଡ଼ିବନି ଆସିବାକୁ ।"

ଶୁଷ୍କ ଓଠରେ
ହସଟିଏ ହସି ସମ୍ମତ ଜଣାଇଲି
ତୋଳିଲି ଯୁଗଳ ପାଣି,
ନମସ୍କାରଟେ
ପକାଇ ପିଣ୍ଡା ତଳକୁ ଓହ୍ଲାଇଲି
ଦରପୋଡ଼ା ବିଡ଼ି ଟାଣି ।

ଶୀର୍ଣ୍ଣ ତନୁ ମୋ
କ୍ଷୁଧା-ରାକ୍ଷସ ପେଟେ ଗର୍ଜନ କରେ
ଏଣେ ତେଣେ ପଡ଼େ ପାଦ
ଓ-ହୋ ରେ କି ଖରା !
ଦେହେ ଗଳିଯାଏ, ଗୁଇଁ ଗୁଇଁ ମୁହେଁ ମାରେ
ତକ୍ତ ପାଲଟେ ସ୍ୱେଦ ।

ଚରା କୁରୁତାର
ପକେଟେ ହାତ ମୋ ଦୈବାତ୍ ଭରଦେଲି
ବାଜିଲି ଗୋଟାଏ ଅଣି,
ଘନ-ଆନନ୍ଦେ
ଚା'ଆ ଦୋକାନକୁ ଅଜାଣତେ ଉଠିଗଲି,
ମାଗିଲି ଗିଲାସେ ପାଣି ।

ପାଣିପିଆ ପରେ
ସିଂଗଲ ଚା'ଆ ଦାନକ ଭୋଜନ ହେଲା
ବସିଲି ଅଳ୍ପକା ମାଶ,
ଦାଗ୍‌ଧଚାଭ୍ରର
ଧୂଆଁ କୁଣ୍ଡଳୀ ନୂଆ ଇନ୍ଧନ ଦେଲା
ତନ୍ଦ୍ରା ଆସିଲା ଘାଶ ।

ଗୋଟିଏ ଗୋଟିଏ
ଚାଲି ଚାଲି ଆସି, ପାଦଦେଲି ବସାଘରେ
ଲଂଠନେ ନାହିଁ ତେଲ,
ପାଖ ଦୋକାନରେ
ବିକିବାକୁ ନେଇ ଚର୍ଦ୍ଧି କାଗଜ ସେରେ
ମିଳିଲା ବୋତଲେ ତେଲ ।

ଅାନ୍ଥ ଲଗାଇ
ଦେଖିଲି—ପଡ଼ିଛ ତମର ପତ୍ର ଏକ
ହେ ମୋର ସଂପାଦକେ !
ଅାମ୍ଳଲଚୁଲ ମୁଁ
ପଢ଼ିଲି—ଲେଖିଛ, କବିତା ଦେବାକୁ ଏକ
କେମିତି କବିତା ଲେଖେଁ ?

ନଦେ ଅାଖିପତା
ମାଡ଼ି ପଡ଼ିଲାଣି ଲେଖିବି କବିତା କ'ଣ ?
କଲମରେ କାଳି ନାହିଁ,
ଯାଉଛି ଶୋଇବି
ସକାଳୁ ଉଠିବି—ଦେହ ଭଲ ଥିଲେ ଅବା !
ଏଇ ମୋ' ଜୀବନ, ଏଇ !

ଏଇ ମୋ ଦୃଷ୍ଟି,
ଏଇ ମୋ କବିତା, ଦୋଉଇ ଦଉଛି ନିଅ,
ତମ ପତ୍ରିକା ଲାଗି,
ଛାପିଲେ ଛାପିବ
ନ ଛାପିଲେ ନାହିଁ, କବିତା ତ ଏବେ ନୁହଁ,
ପତ୍ରିକା ଉପଯୋଗୀ ।

। କଟକ ।
୧୫ ଡିସେମ୍ବର, ୫୮



# କୋଅଲ ଓ ବକ୍ତାସ୍

କପାଳରେ ଶୋଭେ ଚନ୍ଦନ-ଚଇତନ
କଂଠେ ତୁଲସୀ ମାଳ
ଶୀର୍ଣ୍ଣ-ତନୁକୁ ଢାଙ୍କି ରଖିଛୁ
ଖଣ୍ଡେ ଚଦର ନାଲ ।

ଅତ ଅନାବିଳ ବୃଦ୍ଧ ଆସିଛୁ
ସହରେ ପ୍ରଥମ ଦିନ,
ପୁରାତନତାର ଗଣ୍ଡି ଭିତରୁ
ଛନ୍ଦ-କପଟ ହୀନ ।

ବହୁଦିନ ଧରି ଆଖିରେ ଦେଖିଛୁ
ଏଇ ଦୁନିଆକୁ ସିଏ
ଦେହକୁ ତାହାର, ମୁହଁକୁ ତାହାର
ଦେଖି ଅନୁମାନ ହୁଏ ।

ବିତାଇ ଥିବ ସେ ଜୀବନରେ କେତେ
ନିଦାଘ, ଶରତ, ଶୀତ
କେତେ ପ୍ରାବୃଟ, କେତେ ମଳୟର
ଶୁଣିଥିବ ସିଏ ଗୀତ !

ଅଖି ଆଗେ ତାର କେତେ ଯେ କୁଟୀର
ହୋଇଥିବ ଧରାଶାୟୀ,
ତାହାରି ଆନତେ ଉଠିଥିବ କେତେ
ହର୍ମ୍ୟ ଆକାଶ ଛୁଇଁ !

ନିଷ୍ଠୁର ତାର ଆଖି ଦେଖିଥିବ
କୁମାରୀ ହେବାରେ ମାତା,
ଅବା ଦେଖିଥିବ କେତେ ଯେ କୁମାର
ସଂତାନେ ହେବା ପିତା !

ଦେଖିଥିବ କେତେ ପରାଣ-ଝରଣା
ମରଣ-ଚରଣ ତଳେ,
ଛଳ ଛଳ ଛଳ କଳ କଳ ନାଦେ
ଲେଉଟି ପଡ଼ିବା ବେଳେ ।

କେତେ ବିଧବାର କ୍ରନ୍ଦନ-ରୋଳ
କାନରେ ଥିବ ସେ ଶୁଣି,
କେତେ ସଧବାର କର-କଂକଣ
ଖସିବାର ଥିବ ଜାଣି !

ଜରାର ଝଡ଼ରେ ବୁଢ଼ାର ହାତଟି
ଥର ଥର ଥର ଥରେ,
ରୌଦ୍ର ନାଚଇ ତାର ଚଲାପଥ
ରାଜପଥ ବୁକୁପରେ ।

ଛାଡ଼ିଛି ବୁଢ଼ାର ମାଳଜପା ଥଳି
କୋଥଳି ଗୋଟିଏ ଲୋଡ଼ା,
କିଣିବା ପାଇଁ କି ଦୋକାନେ ଦୋକାନେ
ପଗୃର ବୁଲୁଛି ବୁଢ଼ା ।

ଗୃଲ୍ ଗୃଲ୍ ତାର ଆଖିରେ ପଡ଼ିଲା
ସିଲେଇ ଦୋକାନଟିଏ,
ଟପ୍ ଟପ୍ ଟପ୍ ଗୃଲିଛି ମେସିନ୍
କେତେ କଣ ସିଁଏ ଯାଏ !

ଦୋକାନ ଆଗରେ ଓହ୍ଲାଇଛି କେତେ
କୋଥଳାର ପରକାର,
ଉପରକୁ ଉଠି ବୃଦ୍ଧ ପଗୃରେ :
"କେତେ ବାବୁ ସ୍କାର ଦର ?"

"କଅଣ ମଉସା ?" ଟୋକା ଦୋକାନୀଟା
ପୁଚ୍ଛିଲା ମୁରୁକି ହସି,
"ମାଲିକର ଥଳା ଟାଏ ଖୋଜି ଖୋଜି
ଥକିଲିଣି ବାପା ଆସି !"

ବୁଢ଼ା କଥା ଶୁଣି ଟୋକା ଦୋକାନୀଟା
ହସିତ ଉଠିଲା ଜୋରେ,
କହିଲା, "ମଉସା, ତମେ ଯା ଖୋଜୁଛ
ମୋ ପାଖରେ ନାହିଁ ମିଳେ ।"

"ଏ ସୁବ୍ରା କଅଣ ?" ଇଂଗିତ କଲା
ବୃଦ୍ଧ ଉଠାଇ କରେ
ଦୋକାନ ଆଗରେ ଝୁଲୁଥିବା ସେହି
ବ୍ରେଷ୍ଟ୍-ଟାଇଟ୍ ମାଳେ ।

କଣ କିଣ କିଣ ଦୋକାନୀ କଂଠ
ହସର ଉଠିଲା ଝଡ଼,
ସେ ହସ-ଝଡ଼ରେ ମନେମନେ ବୁଢ଼ା
କ୍ଷୁବ୍ଧ ହୋଇଲା ବଡ଼ ।

"ମାଳି ଜପା ଥଳି ନୁହେ ଏ ମଉସା"
କହିଲା ଦୋକାନୀ ଧୀରେ,
"ଆଉ କଅଣ ସେ ?" ପୁଉଣି ପଗୃରେ
ବୃଦ୍ଧ, ନିର୍‌ବିକାରେ ।

ଶୁଣିଲା ଯେତେବେଳେ, ଲମ୍ବିତ କୁଚ-
ଶ୍ୱର ଥାଏ ସିଏ ବନ୍ଧୁ,
କ୍ରୋଧ ଓ ଘୃଣାରେ ବୃଦ୍ଧ କପାଳ
ଗଲା କୁଞ୍ଚିତ ହୋଇ ।

ନୀରବେ ବୃଦ୍ଧ ଚରଣ ଚାଳିଲା
ରାଜପଥ ପରେ ପୁଣି
ପଛରେ ତାହାର ଫିଟି ପଡ଼ିଥିଲା
ଅସରା ହସର ମୁଣି ।

କଟକ
୨ ଜୁଲାଇ, ୫୯



# ସେଦିନ ଶାନ୍ତ ହେବ

ଥିଲି ଯାଯାବର, ଆଜ ମୋର ଘର ଲହର ଦରିଆ କୂଳେ
ଏ ମୋ ତାରୁଣ୍ୟ ବେଣୁର ବେହାଗ ଅବିରତ ଝୁରି ମରେ ।
ନିତ ନୂଆ ନୂଆ ଜ୍ୱାଳାର ଜଗତ
ପ୍ରତି ପଦପାତେ ଜାଗେ ଗିରିପଥ
ଗୀତ-କବିତାର ସୁରଧୂନୀ-ଝରା ବଂଶୀ ମୋ ଉଠେ ଡାକି :
କେଉଁଠାରେ ତମେ ଗୋପନ-ପ୍ରିୟାଗୋ, ପ୍ରାଣର ଚକ୍ରବାକୀ ?

ଚିର ବିଦ୍ରୋହୀ ପୌରୁଷ ମୋର ଉଦାସ-ଆକାଶ ତଳେ
ରକ୍ତଶିଖାର ମଶାଲ ନିଭାଇ ତମକୁ ସଜନୀ ଖୋଳେ ।
ମରମ ପଥରେ ଅଜ୍ଞାତ କାହାଣୀ
ଖସି ଉଠେ ତମ ଆସ୍ମୃତ ଗୃହାଣି
ଦୋଳା-ଚଞ୍ଚଳ ତମରି ସେ ବେଣୀ, ତମରି ପଣତ ଢେଉ—
ମନେପଡ଼େ ସାଥୀ, ଘନାଇଁଲେ ରାତି ତମରି ଲଳିତବାହୁ ।

ଚିର ବିଦ୍ରୋହୀ ପରିଣତ ହେଲି ବିରହୀ-ଚକ୍ରବାକେ
ନୀରବେ ଫୁଲେ ମୋ ଅସୀମ ବେଦନ ବିଚ୍ଛେଦ-ନଈ ବାଁକେ
ଭଗ୍ନପ୍ରେମର ଅଙ୍ଗାର ତଳେ
ଅନ୍ତର ମମ ଦାବା-ରାତି ଜଳେ
ଯେବେ ଆକାଶର ନଦୀ-ଶଯ୍ୟାରେ, ଜ୍ୟୋତ୍ସ୍ନା-ଜୁଆର ଉଠେ,
ଏଇ ମୋ କରୁଣ-ଆଖିର ଗୃହାଣି ଝୁରେ ସେଇ ନଦୀ ତଟେ ।

ହାତରୁ ଖସିଛି ଅମର ଲେଖନୀ, ଛିଡ଼ିଛି ମୋ ବୀଣା ତାର
ମୁଁ ଆଜ ବସିଛି ବିରହ-ବ୍ୟଥାର ବିରାଟ ସୌଦାଗର ।
ଏ ମୋ କାମନାର ରାଜଧାନୀ ପଥେ
କାଚ ରୁଣୁଝୁଣୁ ନୀରବ-ନିଶୀଥେ
ରହି ରହି ରହି ବାଜେ ପ୍ରତିଧ୍ୱନି, ବାଜେ ଅବିରତ କାନେ,
ମୁଁ ଆଜ ମିଶିଛି ଏଇ ନିଖିଳର ବିରହର ସମୀରଣେ ।

ତୁମେ ଥିଲ ଫୁଲ, ମୁଁ ଥିଲି ସୁରଭି, ଥିଲ ଗୋ ଗନ୍ଧ ତୁମେ,
ମୁଁ ଥିଲି ଜ୍ୟୋସ୍ନା, ବିସ୍ତାରିତ ଏ ଆକାଶର ମରୁଭୂମେ ।
କ୍ଷୁଧାତୁର ମୋର ଚୁମ୍ବନ ଦାଗ
ହୃଦୟଭରା ମୋ ପ୍ରୀତିର ସୋହାଗ
ତାରକା ପରି ଗୋ ରାତର ଆକାଶେ ଜଳିବ କପାଳେ ତୁମ,
ହେଉ ବା ନ ହେଉ ସାକ୍ଷାତ ଆମ, ସାନ୍ତ୍ୱନା ସେହି ମମ ।

ଅନାବିଳ ମମ ହୃଦୟର ପ୍ରେମ ହୋଇଛି ଚୂର୍ଣ୍ଣୀଭୂତ
ଯାଇଥିଲି ଭୁଲି ମୁହିଁ ନିଜେ ବୋଲି ଦୃଷ୍ଟିଝଡ଼ର ଦୂତ !
ତୁମର ନିବିଡ଼ ଭୁଜ-ବନ୍ଧନ
ଜୀବନେ ଦେଲା ମୋ ମହା କ୍ରନ୍ଦନ
ମୋର ନିଷ୍ଠୁର-ନିୟତି ସେପାଇଁ ହସିଲା କୁଟିଳ ହସ
ପୌରୁଷ ମୋର ଅଚେତନ ପିଇ ଭଗ୍ନ-ପ୍ରେମର ବିଷ ।

ସମାଜିକତାର ବିଷ-ନିଃଶ୍ୱାସ, ମଣିଷର ଫୁତ୍କାରେ
ପ୍ରତିଟି ପ୍ରଦୀପ ନିଭିଥିଲା ମୋର, ତୁମେ ଜଳୁଥିଲ ଧୀରେ ।
ଏ ମୋ ବିଦ୍ରୋହୀ-ହୃଦୟ ଗହନୁ
ଏ ମୋ ଜୀବନର ନିଶୀଥ-ସ୍ୱପ୍ନୁ
ତୁମେ ଆଜ ଦୂରେ, ମୁଚିଲି ମୋ ଝରେ, ଝୁରିବ ଜୀବନ ଭରି
ତୁମ ବିଚ୍ଛେଦ ପୌରୁଷକୁ ମୋ କରିବ ଅତ୍ୟୋଗୃଷ୍ଟ ।

ଗୀତ କବିତାର ସୁରଧୁନୀ-ଝର୍ ବଂଶୀ ମୋ ବାହୁନିବ
ଉନ୍ମାଦ କବି କାନ୍ଧେ ପକାଇ ଓମର ସ୍ମୃତିର ଶବ
ସ୍ନେହନାଶର ମହା ଶ୍ମଶାନେ
ଭ୍ରଷ୍ଟ ଦର୍ପ ମହା ଅପମାନେ
ଭଗ୍ନ-ପ୍ରେମର ନଗ୍ନ ମୂରତି ନାଚିବ ନିଖିଳ ଭରି
ବାସରଘରର ରତିଶେଯ ଯେତେ ସବୁ ଦେଇ ପୋଡ଼ି ଜାଳି ।

ସନ୍ତାହର୍ ଏଇ ତରୁଣ-ଶିବର ଅରୁଣ-ରଙ୍ଗା ଆଖି
କ୍ରୋଧର ପବନ ଭେଦି ଗିରିବନ ବିରହୀର ବଇଶାଖୀ
ଏଇ ପୃଥିବୀର ଜଠରେ ଜଠରେ
ଖୋଜିବ ତମକୁ ପଶି ଯମପୁରେ
ଯେଦିନ ପ୍ରକୃତି ପ୍ରୀତି-ଉତ୍ସବ ଲୋତକରେ ଦିବ ଭାସି
ସେଦିନ ଶାନ୍ତ ହେବ ଏଇ କ୍ଷୁଦ୍ର ପୃଥିବୀର ପଥେ ବସି ।

କଟକ
୧୬ ଜୁଲାଇ, ୬୮



# ନାଚ ମୁର୍ଦ୍ଦାର !

ହେ ମୋର ଦେଶର
ଆଗୁଆନ୍ ଯୁବଶକ୍ତି ରେ,
କାହିଁଗଲ୍ ତମ ଦୀପ୍ତି ରେ ?
ଦୁର୍ବଳ ହେଲ
ବନ୍ଧ୍ୟା ହେଲୁ କି ଶକ୍ତିରେ ?
ଜଳ ଜଳ ଗୃହ୍ନଁ ତୃପ୍ତି ରେ !

ଅତୀତରେ କେତେ
ବରିଛ ଦୁଃଖ-କଷଣକୁ,
ଶୋଷଣ, ଶାସନ, ପେଷଣକୁ,
ଭାଙ୍ଗିଛ କେତେ
ଲୌହ-ମୂଷଳ, କମାଣକୁ
ଚରଣେ ଦଳିଛ ଜୀବନକୁ ।

ମରଣ-ବିଜୟୀ-
ତରୁଣ, ମୌନ ଆଜି କିଆଁ ?
ଜଳ ତୁ ଅଲିଭା-ଅନଳ ରେ !
ଜାଗର ବୀର୍ଯ୍ୟ
ହୃଦରେ ଭରସା, ଅଟୁ ସାହା
ତୋ ସମ ବୀର ତ ବିରଳ ରେ

ଜାଉ ପାଇଁ ଆଜ
ଗ୍ରୁଡିର ରକତ ଢାଳି ଦିଅ,
ଯୁଗର ଏ ଖ୍ରିମ-ଅହ୍ୱାନ
ଅମାପ, କୁମାପ
ଯୁଗଳ ଚରଣେ ଦଳିଦିଅ,
ଦଳିଦିଅ ଅରେ ଯୌବନ ।

ପ୍ରେମ-ସଂଗ୍ରାମେ
ମୁକ୍ତି କେଉଁଠିରେ ନାହିଁ ମିଳି,
ଡାକେ ଓଡ଼ିଶାର ନଈ-ନାଳ,
ଧର ଗାଣ୍ଡିବ,
ଉଠ ପାଣ୍ଡବ, ଦୁଲା ଜାଳି
ପାଦେ ଦଳି ଶୂଳି, କାରାଗାର ।

'ମହାନଦୀ' ବୁକେ
ନାଚୁ ଆଜ ବାତାବର୍ତ୍ତ ରେ,
'ବିରୂପା'ରେ ଉଠୁ ବେଗାନଳ,
ଶମଶାନୁ ଧର
ସଂଜିବନୀର ସର୍ତ୍ତରେ
ହୁଂକାରେ ନାଚ ମୁର୍ଦ୍ଦାର !

ଶାସନ କଳର
ବୁଲେଟ୍‌କୁ କରି ଗଳେ ମାଳ
ନାଚରେ ତରୁଣ-ମହାକାଳ,
ନାଚ ଶଂକର
ବାରବାଟି ବୁକେ ଧରି ଶୂଳ
ଖଡ଼ ଖଡ଼ କରି ହାଡ଼ମାଳ ।

'ମଲ୍ଲଭଣ୍ଡିଆ'
ଗ୍ରୁଢ ପରେ ନାଚ କାପାଳିକ,
ନର ମୁଣ୍ଡର ଥାଳ ଧରି,
ନାଚରେ ଅଘୋରୀ,
ତାନ୍ତ୍ରିକ ଆଉ ନାସ୍ତିକ
ନାଚ ଭୈରବୀ, ମହାକାଳି !

ମରଣ ଦୁଆରେ
ହାଣ ବିଦ୍ରୋହୀ ପଦାଘାତ,
ହେ ମୋର ଜାତିର ତରୁଣ ରେ,
'ଭାଗ୍ୟବାଦ'କୁ
ଚୂର୍‌ମାର କର ଧୂଳିସାତ
ହେ ମୋର ଜାତିର୍ ଅରୁଣରେ !

ମୁକ୍ତି ଆମର
'ଦାନ' ନୁହେ କାର 'ଉପହାର'
ପ୍ରାପ୍ୟ ଆମର ମୁକ୍ତି ରେ,
ସରଣୀରେ ଆମ
ଫୁଟେ ନିତି କୋଟି ଶତଦଳ
ଦରକାର ନାହିଁ 'ଭୁକ୍ତି' ରେ ।

। କଟକ ।
୫ ନଭେମ୍ବର, ୫୮

★★★
★
★★★

# ନମୁନା

ତୁମେ ହେଲେ
ଘଣ୍ଟା
ମୁଁ ହୋଇବି
କଣ୍ଟା
କକ୍ଷ ମୋ
ତୁମର ସେ
ବକ୍ଷ,
ବାର ବାର
ତମେ ଯଦି
ମନାକର
ତଥାପି ତ
ବୁଲିବି ମୁଁ
ବୁଲିବି,
ବୁଲିବାଟା
ମୋ ଜୀବନ
ଲକ୍ଷ୍ୟ ।

ତୁମେ ହେଲେ
ଭଡ଼ା ଘର
ସାଜି ମୁହିଁ
ଯାଯାବର
କିନ୍ତୁ ଦିନ ବାନ୍ଧିବ
ବସା ମୋ,

"ନୟୂମିତ
ମାସ ଶେଷେ
ଦେବ ଭଡ଼ା"
କହୁ ଶେଷେ
ଅଗ୍ରନକ ଖ୍ୱେ ଦନେ
ଖସିବ୍...
'ଖସିବା'ଟା
ଜୀବନ ବେଢ଼ସା ମୋ ।

ତୁମେ ହେଲେ
ଗଣିକା
ଯୌବନ-
ବଣିକା
ଲଂପଟ ନଷ୍ଟସ୍
ହେବ ମୁଁ,
ତୁମ ରୂପ-ସଂଭାର
ତୁମ ଅବସ୍ଥବକୁ
ସମ୍ଭୋଗୀ ବନା ପାରଶ୍ରମିକେ
ଚମ୍ପଟ ନଷ୍ଟସ୍
ଦେବ ମୁଁ ।

ନସୁମ ଏ
ଆଜକାର
ପ୍ରଚଳିତ
ସମାଜର
ଶଠତା ମୋ
ଖାଲ୍ କରଣୀୟ ଗୋ,

'ନୈବେଦ୍ୟକଣା'କୁ ଧରି
ପାରିବାକୁ
ଯେତେବେଳେ ମତି
ଧରିଥାଅ
ଯେ ଧରିଛ
ପ୍ରତାରଣା
ତୁମ ବରଣୀୟ ଗୋ !

। କଟକ ।
୧୦ ଅକ୍ଟୋବର, ୫୮



# ଆଜି ଏଇ ନବ ପ୍ରଭାତ ବେଳାରେ...

ଆଜି    ରଶ୍ମିର ରଥ ବାହି ମୁଁ ଆସିଛି ଅରୁଣ
ଖୋଲି    ଧ୍ୱାନ୍ତ-ପଥରେ କାଟି ମୋ ନୂତନ-ସରଣୀ,
ଆହେ    ଚିର ପରିଚିତ ଅତି ଆପଣାର ପାଠକେ !
ତମେ    ପାଇନା କି ମୋର ଲୋହିତ, କଅଁଳ କିରଣ ?

ମୁଁ ତ    ଲିଖିଛି ବକ୍ଷରେ ନବ ନୂତନର ଭୂମିକା
କେତେ    କାଟି ମୁଁ ଆସିଛି ତମିସ୍ରାର ଧୂମିକା !
ମୋର    ଯୁଗଳ ଓଷ୍ଠେ ଫୁଟି ଅଛି ନୂଆ ଦରୋଟି...
ବଜ୍ର ଗଢ଼ା ମୋ କରୋଟି ।

ଉଲ୍ଲାସେ ଆଜି ତୋଳିବ ମୁଁ ଟାଳି
କୁସୁମାଞ୍ଜଳି ଭରି ହେ !
ଧୋଇ    ତରୁଣ ମୁଖରୁ ଶତ ନିରାଶାର କାଳିମା,
କାଟିକାଟି ଦିବ ପ୍ରତାରଣା, ଜାଲ, ଛଳନା—
ପ୍ରୀତିରସୂତାରେ ଗୁନ୍ଥି ହୃଦୟ-ପୁଷ୍ପ କୋମଳ ମାଳ ହେ !
ଅଂଶ ମୁଁ ନେବ ଜୀବନର ନୂଆ ନାଟକେ
ଆହେ ଅଗଣିତ ଉଦାର ପାଠିକା, ପାଠକେ !
ପଶ୍ଚାତେ ଦିଶେ ଗତ-ଅତୀତର ଚରଣ ଚିହ୍ନ ଏଇ ତ,
ନାଚି ଉଠେ ମୋର ନେତ୍ର-ପଥରେ
ଅନାଗତ ଦିନ ଗୁଚ୍ଛିଏ ତ ।
ପଥେ ପଥେ ଆଜି ବାଜି ଉଠେ ନୂଆ ବାଜଣା,
କେତେ ନବବଧୂ ଓଠେ ଓଠେ ଖୋଲି
ହସ ଝିଲି ଝିଲି
ପ୍ରୀତି-ତଟିନୀର ତୁଠେ ତୁଠେ ଖୋଲି
ହେମ-ଅଂଗର ମାଜଣା ।

ସେହି ପଥରେ ମୋ ବାହୁ ନେବ ରଥ
ଯେ ପଥ ରହିଛି ଅଜଣା ।

ଆଜି ଏଇ ନବ ପ୍ରଭାତ ବେଳରେ
ନବ ସୂର୍ଯ୍ୟର ଉଦୟ କାଳରେ
ଦୁନିଆର ଯେତେ ବନ୍ଧୁକ-ଦଳ,
କାରାବାସ, ଶୂଳ, ବନ୍ଧୁକ, ଧନ-ସିନ୍ଦୁକ
ବୋମା-କନ୍ଦୁକ ତଳେ
ଉଠିବ ଜୀବନ କେଦାରେ କେଦାରେ
ନୂଆ ହିଲ୍ଲୋଳ ;
କାଳ-ନାଗୁଣୀର ଗରଳ ମୁଣ୍ଡିରୁ
ନର-ଦାନବର ମରଣ-ତୂଣୀରୁ
ନିଃଶେଷ ହେବ ବିଭେଦର ଶର
ସରବ ଗରଳ
ରହିଥିବ ଏହି ଧରଣୀ···
ରହିଥିବ ଏଇ ମାନବ ସମାଜ, ସରଣୀ ।

ମୁଁ ତ ପ୍ରଳୟ-ପଥର ମଳୟ
ମୁଁ ତ ଅବିନଶ୍ୱର, ମହୀୟାନ୍,
ମୁଁ ତ ଟାଳିବ ସମନ ଆଳୟ
ମୁଁ ତ ଚିର ଉଜ୍ଜ୍ୱଳ ଭାସ୍ୱାନ୍ ।

ପ୍ରାଣ-ମନ୍ଦିରେ ପ୍ରୀତିର ପୂଜକ
ନର-ଦେବତାର ବନ୍ଦନା-ଗୀତ ଗାଇବ···
ନିରାଶାର ସ୍ରୋତେ ଆଶାର ତରଣୀ ବାହିବ ।

୨୦ ଏପ୍ରିଲ୍, ୫୯



# ଉତ୍ତର

। ୧ ।

ପାଇଲି ଚିଠି ଶ୍ରାବଣୀ ସଂଧ୍ୟା ବେଳେ
ସୁଂଦରୀ ଗୋ,
ତମର ହାତ ଲେଖା,
ଚଢ଼ିଲି ତାକୁ ନେଇ ଆଲୋକ ତଳେ
ଲେଖିଛ, ମୋର
ପାଇବା ପାଇଁ ଦେଖା !

ଲେଖିଛ ତମେ, ପ୍ରତିଶ୍ରୀ କର ପୂଜା
କରିଛ ମୋର
ଜୀବନ ନିରୀକ୍ଷଣ,
କିଏ ସେ ତମେ, କିଏ ଗୋ ଦୁଷ୍ଟରଜା ?
ସୃଷ୍ଟି କଲ
ଅଂଗେ ମୋ କଂପନ ?

ଶଯ୍ୟା ମୋର ଏଇ ଯେ ଧରା ତଳ
କଂଠ-ହାର
ଇସ୍ପାତର ଗୁଳି,
ଯଷ୍ଟି ମୋର ସଂଗୀନର ଫାଳ
ଶପଥ ସିନା
ବଜ୍ର ଠାରୁ ବଳି ।

କୁଟୀର ମୋର ମୁକ୍ତାକାଶ ତଳ
ଅନାହାରଟା
'ଖାଦ୍ୟ' ମୋର ଦିନା;
ପାନୀୟ ମୋର ନର୍ଦ୍ଦମାର ଜଳ
ପୂଜ୍ୟା ମୋର
ଅଚଂଚଳା, ଧୀନା ।

ମୃତ୍ୟୁ ମୋର ବଂଧୁ ସିନା ସାଥେ
ଗ୍ରୀଷ୍ମ ମୋର
ତର୍ପଣର ଛତା,
କ୍ଲାନ୍ତ ମୋର ପାଥେୟ ପୁଣି ପଥେ
ପ୍ରାନ୍ତଟରେ
ମୁକ୍ତ-ନଭ ଛତା ।

ଏ ପଥେ ଯେତେ ଗଲେଣି ଗୃହ ବାମା
ଗଲେଣି ଯେତେ
କୃଷ୍ଣଗନ୍ଧାଧାର୍ମ୍ବ,
'ସତ୍ୟଭାମା', 'ଛଂଦା', 'ମନୋରମା'
ମୁଗଲ ପଦ
ଛଂଦେ ଗୃହ ଗୋଷ୍ଠ;

ମୋ ପରେ କାର ଦୃଷ୍ଟି ନାହିଁ ପଡ଼େ
'ଅସାମାଜିକ',
ସଙ୍ଗହୀନ ଯେଣୁ,
ପୂର୍ବ ରବି ପଶ୍ଚିମରେ ବୁଡ଼େ
ମୋ ପାଇଁ ବାକେ-
ନାହିଁ କା ମନ-ବେଣୁ !

କଣୋଖ୍ଚ କେହ୍ଵ ଗ°ତ ନାହିଁ ଯାତେ
ଶୁଷ୍କ-ଓଠ
ସମ୍ମୁଖରେ ମୋର,
ସଜାଏ ନା କେ ଶଯ୍ୟା ନିଜ ହାତେ
ମୋ ପାଇଁ କଏ
ରଚେ ନା ଅଭିସାର ।

ସେବେଳେ ତମେ ବନ୍ଦିବଣୀ କିଏ ?
ଧ୍ୱାଂତ-ନଭେ
ଚପଳା ଦେଲ ଦେଖା !
ସମାଜ ତଳେ 'ପାପୀ'ରେ ଗଣା ଯିଏ
ତାହାକୁ କିଆଁ
ବରବ କର 'ସଖା' ?

'ପ୍ରତିଶ୍ରୁ' ଆଜ୍ଞା ଦଳିତଦଦ ଯହିଁ
'ବିକାଶ' ନାମେ
ନିକାଶ ହୁଏ ଯାର,
ତା ପାଶେ କିଆଁ ଆସିବ ଲସ୍ୟମୟୀ ?
କମ୍ର କରେ
ଘେନି ଗୋ ଫୁଲହାର !

ଲେଖିଛ, ନିଜେ ଭସ୍ମ କରି ତନୁ
କରିବ ତାର
ବେଦନା ଉପଶମ,
ବେଦନାମସ୍ତ ମୂର୍ତ୍ତି ସେ'ତ ମନୁ—
ହେବ କି ତାର
ବେଦନା ଉପଶମ ?

ଆସନପାତ ରୂକ୍ଷ ହୃଦ ତଟେ
ମଂଦିରେ ତା
ଜାଳିବ ଧୂପାବଳି,
ଅଶାଂତର ଦେବତା ପୂଜା-ପୀଠେ
ଟେକିବ ତମେ
ଅର୍ଚ୍ଚନାର ଆଳତୀ!

ଦୁଃସାହସେ ଲେଖିଛୁ ଶଠି ହାତେ
ବାରଂବାର
ଦ୍ୱନ୍ଦ୍ୱ ଜାଗେ ମନେ,
କିଏ ଗୋ ତମେ ଜୀବନମୂର୍ତ୍ତି, ସତେ—
ଝଂକାରିଲ
ଏ ବେଳେ ନବ ତାନେ ?

। ୨ ।

ପଡ଼ୁଛ ମନେ, ଯାତାପଥେ ଦିନେ
କଣୋଗୋଟିଏ
ପ୍ରଶ୍ନଥିଲି କରି,—
"ନିଜକୁ ନିଜେ ଆଘାତ ଦେଇ, ପ୍ରାଣେ –
ସହିବ କେତେ-
ଦିନହେ ପଥଗୃହୀ ?"

ଆଜି ଏ ମୁଦା ପଥପ୍ରାନ୍ତ ପରେ—
ଖୋଜୁଛି ବସି :
ତମେ କି ସେହୁ ଅଛ ?
ତମେ କି ସେହୁ, ବଢ଼ାଅ ପାଦ ଧୀରେ
ଆସିବା ପାଇଁ
ଖୋଜ ମୋ ଚଲାବାଟ ?

। ୩ ।

ଆସରେ ଆସ ପାଗଳୀ-ଡନୁ, ଗୋଷ୍ଠି,
ଆସରେ ଆସ
କାବ୍ୟମୟୀ ପୂର୍ଣ୍ଣି,
ଆସରେ ଆସ ହୃଦର ଫୁଲଝର
ଆସରେ ଆସ
ପ୍ରୀତର ପୂଜାରଣୀ !

ଆସ୍ରେ ଆସ ପଥକୁ ଗୃହେଁ ସଖି,
ସମ୍ମୁଖେ ଯେ
କୃଷ୍ଣ-ଅମା ଘୋର,
ଆସିଲେ ଯିବା ସମାଜ-ସୁର୍ଯ୍ୟ ଗୃଖି
ଅଭକମି
ଦୁଃଖ-ପାର୍ବାର ।

ଆସରେ ଭବୀ କୁଟୀର-ର୍ଣୀ ମୋର
ଆସ ତୋ-
ବେଳ ନୟନେ ଜାଳ ବଡ,
ମୁକ୍ତ ସଖୀ ତୋ ପାଇଁ ମୋର ଦ୍ୱାର
ମୋ ପାଇଁ ଥରେ
ଗଂଡ଼ ହାଅ ପାତି !

ଦେବ ମୁଁ ଯେଉଁ ଚୁମ୍ବନର ଦାନ
'ଦଂଶନ' ସେ
ଭଗାଦେବୀ ବୁକେ,
ଆମର ଯେଉଁ ଛଂଦ-ବନ୍ଧୁବନ
ତାହାର ତଳେ
ଆଗାମୀ-ଶିଶୁ ଡାକେ ।

ଯାତ୍ରୀ ଡାକେ, ଭାଂଗା ତାର ଯାନ
ଧ୍ୱାଂତ-ପଥେ
କେହୁ ତା ନାହିଁ ସଖା,
ତମେ ଗୋ ତହିଁ ପ୍ରଭାତ- ବିହଙ୍ଗମ
ତମର ବୁକେ
ଉଷାର ଭାଷା ଲେଖା ।

। ଢେଂକାନାଳ ଜେଲ ।
ଅଗଷ୍ଟ, ୫୭

>V<

# ଆରେ ବିଦ୍ରୋହୀ

ବିଦ୍ରୋହାନଳ ନଜଳିବ ଯେବେ
କିପରି ହୋଇବ ଶୁଦ୍ଧି ? —
ଏଇ ଜାତିଟାର-ନୈତିକ-ବାୟୁ-
ମଣ୍ଡଳ ଥିବ ସର୍ବଦା ଅବରୁଦ୍ଧ ।
ଅଗଣିତ ନର ରକ୍ତରେ ଲାଲ୍ —
ନ ହେଲେ ଏ ଦେଶ ଥିବ ଚିରକାଳ
ଚିର ଅଜ୍ଞାନ ତିମିର ଗର୍ଭେ
ଆଲୋକ ଦେବନି ଦେଖା,
ଆଲୋକହିଁ ଅଛି ମଣିଷ ଭିତରେ
ବିଦ୍ରୋହ ତାର ଶିଖା ।

ଚିର ପଦାନତ ଦଳିତ ଜନର
ଅନ୍ତରାତ୍ମା ଯେବେ,
ଭୀଷଣ ସଂଗ୍ରାମିକ-ତେଜ ନେଇ
ଜାଗ୍ରତ ହେବ କେବେ !
ସେଦିନ ତାତିବ ରାଜଧାନୀ ଗ୍ରୁଢ
ଅସମାନତାର ସବୁ ବଜ୍‌ଜାଣ୍ଟି
ଧନତନ୍ତ୍ରର ପ୍ରତିଟି ମୀନାର
ହେବ ହେବ ଧରାଶାୟୀ,
ବିଦ୍ରୋହ, ଖାଲି ବିଦ୍ରୋହ ଛଡ଼ା
ଅନ୍ୟ ପନ୍ଥା ନାହିଁ ।

ବିଦ୍ରୋହ ହିଁ ସବୁ ଅନୀତିକୁ
ଦେଇପାରେ ପୋଡ଼ି ଜାଳି
ବିଦ୍ରୋହ ଏକା ମାନବାତ୍ମାର
ସୁମହାନ୍ ପଦାବଳୀ ।
କେ ଅଛ ଯୁବକ, କେ ଅଛ ତରୁଣ ?
ଆରେ ବିଦ୍ରୋହୀ, ରକ୍ତ-ଅରୁଣ,
ପୁରାତନତାର ଧ୍ୱଂସ-ମୋହନ
ତମ ବିଦ୍ରୋହ-ବେଣୁ
ବାଜି ଉଠୁ ଆଜି ପ୍ରାଣ-ପ୍ରାନ୍ତରେ
କାତର ଅଗ୍ନି କୋଣୁ ।

। କଟକ ।
୧୬ ସେପ୍ଟେମ୍ବର, ୬୮



# ଘୋଷଣା

କି କବିତା ଲେଖିବ ?
ଭାଜିଯାଏ
ହଜିଯାଏ
କବିତାର ଛନ୍ଦ,
ଅନୁପ୍ରାସ, ଯମକ,
ବାଜି ଉଠେ ଅନ୍ୟାୟ
ଦୁର୍ନୀତି, ଅନୀତିର
ଝମକ !

କେତେ ଅବସ୍ଥରେ...
ହଏ ଆଜ ଗୁଟିପିଟି
ଦାନବର ଗରଳ,
କେତେ ଆଖି ତରଳ
ସମ୍ମୁଖେ ମାଡ଼ିଯାଏ
ମରଣର ନୀଳମେଘୀ-ପରଳ ।

ବନ୍ଧୁ, ମୋ ମରମର କାନନେ
ଶାନ୍ତ ମୋ କବିତାର ଆନନେ
ଫୁଟେନାହିଁ ବୁଦ୍ଧର
କରୁଣାର ମୀଠବାଣୀ ଝଲକ,
ଫୁଟିଉଠେ ବହ୍ନିର
ଫୁଟିଉଠେ ଘୂର୍ଣ୍ଣିର ଆଭାସ,
ଧ୍ୱଂସର ରଭସ ।
ଯନ୍ତ୍ରଣା-ଅଶ୍ରୁର ଲହରେ...
ଓଦା ମୋର ଆଖିପତା
ପଡ଼େ ନାହିଁ ପଲକ ।

ଭାଙ୍ଗିଯାଏ ମମତାର

ତୁଟିଯାଏ ସମତାର ବନ୍ଧ,

ହଜିଯାଏ କବିତାର

ଅନୁପ୍ରାସ, ଯମକ

ଛନ୍ଦହତ ହୁଏ ତାର ଛନ୍ଦ ।

କେତେ ମଧୁବାସେ ଆଜି

ଭାଙ୍ଗେ ନବ-ଦମ୍ପତି

ମଧୁବନ-ବନ୍ଧ ।

ମଣିଷତା ଆଜି ପଶୁ, ବନ୍ୟ

ଅମଣିଷ, ଦାନବତା

ଯେବେ ଆଜି 'ଧନ୍ୟ'

ପୁଣ୍ୟତା 'ପାପ' ନାମେ

ସହି ଆଜି ଗଣ୍ୟ,

ସହି ଜାତି କୁଳବଧୂ

ସହିଁ ତାର ହସ ମଧୁ

ବଜାରର ପଣ୍ୟ,

ଅମି ଆସେ ଜୀବନର

ସଙ୍ଗୀତ ରାଗିଣୀ

ଦରୋଟିରେ ଗ୍ରେଟମାରେ

ମୃତ୍ୟୁର ଉତ୍‌ଫଣ ନାଗୁଣୀ ।

ସର ସର ଆସେ ଯେବେ

ମର ମର ଆସେ ଯେବେ

ଅନାଗତ-ଜୀବନର

ସଚିତ ସପନ,

ଜ୍ୟୋତିହୀନ ଯେବେ ଆଜି

ଚନ୍ଦ୍ର ଓ ତପନ;

ଚଉଦିଗେ ନାଚେ ଯେବେ
ଅନ୍ଧାର ଆଜି କଳାଛାଇରେ,
ସେଠି ଆଉ କେତେଦିନ
ଲୁଚିବେ ?

ସେଠି ଆଜି କେତେଦିନ
ସୃଷ୍ଟିର ଦର୍ଶନ
ନାଥ କର ବର୍ଷଣ
ନାଦ-ଘୋଷ କର୍ଷଣ—

କର କର ଅଯଥାରେ
ଲାଙ୍ଗଳ ଲୁହା କିଆଁ ଘୋରିବ ?
ଶ୍ରମ କିଆଁ ଅଯଥାରେ ସାରିବ ?

ବୁଝିଲଣି, ମୁକ୍ତିର ବାଟ ଆଉ ନାହିଁରେ
କବିତାରେ ଭୁଲସ୍ୱର
ଗୀତି କିଆଁ
ନଉଠିବ ଗାଇ ରେ ?

ହଜିଯାଉ, ଭାଜିଯାଉ
କବିତାର ଛଂଦ
ଅବା ତାର ଅନୁପ୍ରାସ
ଉପଧା ଓ ଯମକ,
ହେଉ ପଛେ ଅପମାନ ଧାଡ଼ିରେ
ସ୍ପନ୍ଦନ ଗୁଡ଼ାକଉ
ଆଜିପଛେ ନାଡ଼ୀରେ
ଭରି ଆସୁ ପଗୃଶବ ଗନ୍ଧ ।

ତଥାପି ମୁଁ ବଜାଇବି
ଭୁଲସ୍ୱର ଟମକ
ଆଣିବିରେ ଧ୍ୱଂସର ଚମକ,

ଅନ୍ଧ ଯେତେ ବନ୍ଧୁତ
ସାରବରେ ଇଙ୍ଗିତ
ନାଲିଆଖି, ଧମକ
ଧ୍ୱଂସର ବିନା କାହିଁ
ମୁକ୍ତିର ସମ୍ପକ ?

ତମେ ଦିଏ ତପ ମୋର ଘୁଙ୍ଘିଲ
ମନ୍ମଥ ଦଳରେ
ଶୋଷକର
ପେଷଣର
ଶାସନର କଳ ବଳେ
ନରପଶୁ ଦଳରେ,
ତମେ ଦିଏ ଅନୀତିର
କୁନୀତିର ଦୁର୍ନୀତି-ପ୍ରବୃତ୍ତି,
ତମ ହାଡ଼ ଗୁଣ୍ଡରେ
ହେବ ମୋର ଉର୍ବର
ଧ୍ୱଂସର କ୍ଷେତରେ,
ବକ୍ଷରେ ନଇଁବ ତା
ପ୍ରଳୟର ଫଇଲ,
ତମର ସେ ମୁଣ୍ଡର
ଦାନ୍ତଟା ଯେ ଅସଲ—
ନିକାଳିବ ତାକୁ ମୋର
ଦୁର୍ବାର ହାତୁଡ଼ି ।

ଏଇ ଦେଖ, ଚଳ୍ଚଳି
ଜାଲିଆତ, ଫିସାଦୀର ଗହଳି,
ଉଠିଲି ମୁଁ ଧୂର୍ଜଟି
ଜଟାମାଳ ଥରାଇ,
ବାଜେ ମୋର ଡମ୍ବରୁ
ଉଠେ ମୋର ଉଦ୍ଧତ ଶୂଳରେ,

ତମ ରକ୍ତ-ସ୍ରୋତ ତଳେ
ତମ ପ୍ରେମ-ନଦୀ କୂଳେ
ଖଣ୍ଡ ଖଣ୍ଡ ହୁଏ ମୋର
ଗଳା ହାଡ଼ମାଳରେ ।
କୋପାନଳେ ସବୁ ଆଜି ଜାଳିବ
ଚଣ୍ଡିକା ପାଇଁ ଆଜି
ତାଣ୍ଡବ ପାଳିବ ।

ଯେଉଁ ହାତେ ଝଗାଡ଼ିଛ
ଜନନୀର, ଭଗିନୀର
' ବାନ୍ଧବୀ, ପ୍ରେମିକାର
ନୟନର ବିନ୍ଦୁ,
ଯେଉଁ ମୁହେଁ କରଅଛୁ
ଅବସ୍ତବ ଖାଉଟରେ,
ତମେ ଯେତେ ରାହୁରେ,
ଯେଉଁ ମୁଖେ ଗ୍ରାସିଅଛ
ବନ୍ଧୁ ମୁଖ-ଇନ୍ଦୁ ।
ଯେଉଁ ହାତେ ଫିଟାଇଛ
ଖୋସଣୀ
ଯେଉଁ ହାତେ ଓଟାରଛ
କେତେ ମାଆ-ଭଉଣୀର
ନାକ ଗୁଣା-ବସଣୀ,
ଯେଉଁ ହାତେ ସଜାଇଛ
ତମ ବାମା ଗଣ୍ଡରେ,
ଚିବୁକେ ତା କୃତ୍ରିମ
'ବିଉଟିର ବିନ୍ଦୁ' ।
ସେହି ହାତ କାଟି ତମ
ଦେବି ମାଳା ରୁଦ୍ରାଣୀ ଗଳାରେ,
ଦଳିତ ଓ ପୀଡ଼ିତର ଶକ୍ତି ମୁଁ
ଧ୍ୱଂସର ଜାଗ୍ରତ ଭକ୍ତ,
ବନ୍ଧନ-ହରା ଚିର-ମୁକ୍ତ ।

ସମାଜର ଘଣ୍ଟାରେ
ଯେତେ ଅଛ କୁସ୍ତି
ଲୋପ ହେଲେ
ତମ ଦଳ ସତ୍ତା,
ଘଣ-ସନ୍ଧି ମିଳାଇଲେ
ତମ ହାଡ଼-ମାଂସ,
ତେବେ ଯାଇ
କେତେ ଯୁଗ ପରେରେ
ଅବତାର ନେବ ଯେଉଁ କର୍ତ୍ତା,
ସେହି ହେବ ବ୍ରହ୍ମା
ଅଭିନବ ବଶ୍ୱର କର୍ମା ।
ସୁନ୍ନପୁଣ ହାତ ଆଉ
କହାଣର ମୁନରେ
ଆଙ୍କିବ ପୁନରପି
ସୃଷ୍ଟିର ଅଭିନବ ଫଳକ,
ଦେଖାଦେବ ସୁନ୍ଦର
ଦୁନଆର ଝଲକ ।

। କଟକ ।
୨ ଅଗଷ୍ଟ, ୫୯

*
* *

# ଗୁନ୍ଥ ନା ମାଳା

ଏ ମୋର ଚଶମା କାଚଠୁଁ ସ୍ୱଚ୍ଛ
ସଫେଦ୍ କାହାର ହୃଦୟ ?
ଆଖି ଆଗେ ମୋର ଜଣେ ହେଲେ ବି କେ
ଆସି ହୋଇନାହିଁ ଉଦୟ ।
ଜୀବନ ଭର ମୁଁ ବସିଛୁ ଅନାଇଁ
କେତେ ଦୁର୍ଦ୍ଦିନ ଆସିଛୁ ଘନାଇଁ
ମାନବିକତାର ନାହିଁ ଦେଖା ନାହିଁ
ହୋଇନତ କେହୁ ସଦୟ ।

ଯାହାକୁ ଭେଟିଛୁ, ସେ ମୋତେ ଲୁଟିଛୁ
ନାନା ବେଶେ, ନାନାରୂପରେ
ମୁଁ ହୋଇଛୁ ଶେଷେ ନଶ୍ୱର ଗ୍ରୁଗଲ
ଏକାକୀତ୍ୱର ଯୂପରେ ।
ପଛେ ସକରୁଣ କାନ୍ଦେ ଅତୀତ
ଦୁର୍ଗମ ବଡ଼ ଆଗାମୀର ପଥ
ବର୍ତ୍ତମାନଟା ସଂଗ୍ରାମେ କ୍ଷତ
ତୋଫାନେ ଥରୁଛୁ ଦୀପରେ ।

ଯାନ୍ତ୍ରିକତାର ଯନ୍ତ୍ର ବାଜୁଛି
ହବଯର-ଗ୍ରନ୍ଥି ଭରାଇ
ଖାଲି ବିଷାଦର ଝଙ୍କାର ଉଠେ
ବେଦନାର ବୀଣା ଥରାଇ ।
ଯାକୁ ବଡ଼େ କଷ୍ଟ ପାଇବାକୁ ଭଲ
ସିଏ ମାଗେ ତାର ଅଂଗଭୂର୍ଣ୍ଣ ମୂଲ
ଯେଉଁଆଡ଼େ ଦେଖେ ପ୍ଲାଷ୍ଟିକ୍ ଫୁଲ
ଘୃଣାରେ ମୋ ବୁକୁ ଭରଇ ।

ଏହିପରି ଏକ ପଙ୍କୁ ଯମାଜେ
କବି ମୁହିଁ ଏକୁଟିଆ ଗୋ,
ଏଠି ପଶୁତାର ଗିରିସଙ୍କଟ
ସମ୍ମୁଖେ ମୋର ଠିଆ ଗୋ !
ନାହିଁ ଅଲୋକର କ୍ଷୀଣତମ ରେଖା
ଘରେ ଘରେ ପୂଜାପାଏ ଅନୀତକା
ଦୂର-ଜନପଦୁଁ କେ ତମେ ବାଳିକା
ଗଡ଼ବେଣୀ ନାସ୍ତି ଅହ୍ୱା ଗୋ !?

ମୋର କବିତାର, ମୋ ଗୀତ-ଲତାର-
କୁଞ୍ଜେ କେ ତମେ ଲଲନା ?
ମୁଁ ନଜେ ଗୋଟାଏ ବିଷାଦ-ହଞ୍ଜ
କରଅନ୍ତ କେଉଁ କଲନା ?
କ୍ଷଣିକ ଖିଆଲ, ଉତ୍ତେଜନାରେ
ମୋ ପାଇଁ ପୀଡ଼ିତ ନମ୍ବର ବୀଣାରେ—
ଯେବେ ଜାଗିଥାଏ, ତେବେ ଭୁଲ୍ କଥା
ଆଉ ଝଙ୍କାର ତୋଳନା ।

ହେ ଦୂରଘଣ୍ଟିନୀ, ଜନପଦ-ବାଳା
ଗୁଛନା ମାଳା, ଜଳିବ
ଥରେକର ତମ ଧୀର-ପଦପାତ
ବିଷଫଳ ଖାଇ ଫଳିବ ।
ନାହିଁ ରୋମାଞ୍ଚ, ମୁହିଁ ବେରସିକ
ଅପଥଗାମୀ ମୁଁ ଅତି ଦୁର୍ମୁଖ
ଅନ୍ତରେ ମୋର ନିର୍ଖଳର ଭେକ
ତମକୁ କଅଣ ମିଳିବ ?

। କଟକ ।
୨୨ ମାର୍ଚ୍ଚ, ୭୦



# ସେହି ମୋ ସାଥୀ

ବହୁକାଳ ଧରି ନୀରବ ରହିଲି ଯେବେ
ଭଦ୍ର ହେବାକୁ ଚେଷ୍ଟା କଲିରେ ଭାଇ,
ଏ ସମାଜ ତାହା କରାଇ ଦେଲାନି କେବେ
ମୋ ନୀରବତାର ସୁଯୋଗ ବସିଲା ନେଇ ।

ବଢ଼ାଇଲି ହାତ ମଣିଷକୁ ଯେବେ କବି
ପାତିବା ପାଇଁକି ମୈତ୍ରୀର ବନ୍ଧନ
ମଣିଷର ଉଷ୍ଣ-ନିଃଶ୍ୱାସେ ଗଲା ନିଭି
ଆଶାର ପ୍ରଦୀପ ବହୁବାର ଘନ ଘନ ।

ଜୀବନ ପଥେ ମୋ ଉଠିଲା ଘୂର୍ଣ୍ଣିଝଡ଼
ମୈତ୍ରୀର ଗୀତ ରଚନା ରହିଲା ଅଧା
"ଭଦ୍ର" ହେବାର ଚେଷ୍ଟା ମୋ ଭୁଲ୍ ବଡ଼
ଘିଅ ବାହାରେନି ଆଙ୍ଗୁଠି କଲେ ସିଧା ।

ମୁଁ ଜାଣେ ମୋ ପାଇଁ ଫୁଟିନି ଏ ଦେଶେ ଫୁଲ
ମୋତେ ଡାକେ ଦୂରେ ଝଡ଼-ବାଦଲର ରାତି,
ମୋର ସହଜାତ ବିଦ୍ରୋହ-ଦାବାନଳ
ସେ ମୋ ସହୋଦର, ସେହି ମୋର ପ୍ରିୟସାଥୀ ।

ହେ ମୋର ଅଜଣା ପାଠକ-ପାଠିକାମାନେ
ହେ ମୋ ନିନ୍ଦୁକ, ହେ ମୋର କୁତ୍ସାଜୀବୀ,
କଣ୍ଠ ଭରୁଛି ମୁଁ ପୁଣି ବହ୍ନିଗାନେ
ଅପ୍ରିୟ ସତକଥା ଯାହା କହିଦିବ ।

ମନ ଇଚ୍ଛାରେ ଦିଏ ଯାହା ଦେବ ଆସି
ଦେଉ ତାହା ଫୁଲ ନତୁବା, ଜୋତାର ମାଳ,
ଶଙ୍କର ଶିଷ୍ୟ ନେବ ତାହା ହସି ହସି
ଇତିହାସ ମୋର ଲେଖିବ ତ ମହାକାଳ ।

ସମାଜ, ଧର୍ମ, ଶାସନକୁ ମୁହିଁ ଜାଣେ
ପ୍ରତିକ୍ରିୟାର ପୂଜାରୀ ଦଳର ରୂପ,
ଏ ସବୁକୁ ମୁହିଁ "କାଗଜର ବାଘ" ମଣେ
ନେହେରୀ ଭୀଷଣ, ନିଶ୍ଚୟ ହେବ ଲୋପ ।

ପ୍ରଗତିର ମୁହିଁ ଭୀଷଣ ଗୋଟାଏ ଶକ୍ତି
ମାନବବାଦର ଉଗ୍ର ବିଜୟ-ବାନା,
ମୋ ଜୀବନ ମୋତେ ଶିଖାଇନି 'ରାଜଭକ୍ତି,'
ହାତେ ମୋ ରହିଛି ଦେବୀ ଭାରତୀର ବୀଣା ।

। କଟକ ।
୧୯ ଜୁନ୍, ୭୦



# ଅଭାବର ପୁତ୍ରବଧୂ

ଏଇ ଯେ ଜଳୁଛୁ ପ୍ରିୟେ
ଅଭାବର ଚିର ମରୁଭୂମି,
ଏହାକୁ ପ୍ରଣାମ କର
ଆନ୍ତରିକ ଭାବେ ଗୋ ସଜନୀ !
ତୈଳହୀନ ଶକ୍ତିଧାର ଦୀପେ
ଏ ମରୁତୀର୍ଥରେ କର
ଆରତି ଗୋ,
ତା ନିଜର ପୁତ୍ରବଧୂ ରୂପେ ॥

ଏ ମରୁର ମୁଁ ତପ୍ତ-ନିର୍ଝର
ଅଭାବର ବଂଶଧର,
ଅଂଶଧର ଘନ-ଦାରିଦ୍ର୍ୟର ।
ତମେ ମୋର କୁଟୀରର ରାଣୀ
ଦିଏ ମୋର ଜନକ-ଜନନୀ,
ଧର୍ମ ତବ ପଦେ ତାଂକ କରିବା ପ୍ରଣାମ···
ସ୍ୱାମୀତ୍ୱର ନିର୍ଦ୍ଦେଶ ଏ ମମ ॥

କରୁଛ କି ଭୟ ?
ଅଭାବର ଆଶୀର୍ବାଦେ
ସ୍ୱାମୀ ତବ ମହାନ୍, ଅଜେୟ ।
ହେ ନାରୀ ଅବଳା,
ସଂସାରକୁ ଘେରି ତବ
ଅଭାବର ଆଜି ତୀବ୍ରଜ୍ୱାଳା
ତା ସହିତ ସମାଜର ବିଷାକ୍ତ-ମେଖଳା—

ମଣିଷ କରନ୍ତୁ ସୃଷ୍ଟି
ତମେ ଜାଣ, ମୁଁ ବି ଜାଣେ
ଜାଣିଛନ୍ତି ଯେତେ ସତ୍ୟସେବୀ,
ସେପାଇଁ ନମସ୍ୟା ତମେ
କବିବଧୂ
ମୂର୍ଦ୍ଧ୍ନ ତମ ଜୟ ।।

ଏଇ ଜଲେ
ଅଭାବର ଯେଉଁ ମରୁଭୂମି,
ତାର ଯେ ଧୂସର-ଜ୍ୱାଳା
ରିକ୍ତତାର ଦୁଃସହ-ବୋଧନୀ,
ଅବିରତ ଯାତ୍ରା ବାଜେ କାନେ,
ସଂସାରର ପ୍ରାତ୍ୟହିକ-ଘଣ୍ଟାର ପେଷଣେ ।।
ଗୁରୁଜନ ଉପଦେଶ ସମ
ସସମ୍ମାନେ ନଅ ମାନ,
କର କର ଅଭାବର ଚରଣେ ପ୍ରଣାମ !
ନୁହେ ଏହା ଶାଶୁର ଗଞ୍ଜଣା,
ନୁହେ ବୃଦ୍ଧ ଶ୍ୱଶୁରର ଦୁଃସହ ତାଡ଼ନା ।।

ଦୁଃଖ, କଷ୍ଟ, ଅନାଟନ, ଅଭାବ ପେଷଣ,
କ୍ଷୁଧା ଆଉ ଦାରିଦ୍ର୍ୟର ବିଭୀଷିକାମାନ,
ଅପମାନ, ଅନାଦର, ସମାଜର ଅନ୍ଧ-କୁଷ୍ଠାମଣା,
ମଣିଷର ଈର୍ଷା, କ୍ରୋଧ, ଦ୍ୱେଷର ଯନ୍ତ୍ରଣା—
ଜଠରରୁ ଜନ୍ମ ମୋର
ଜନ୍ମିଛି ମୋ ଦେବୀ ବୀଣାପାଣି
ପଥପ୍ରାନ୍ତେ ଯେ ପ୍ରସୂତି
ଭୟ କି ସେ କରଇ ଡାକିନୀ ?

ଲୁହକୁ କଜ୍ଜ୍ୱଳ କର
ସହଚର,
ଆପଣାର ନୟନର ଧାରେ
ଦିଅ ଅଭିଶାପ ସଖି,
ପୃଥିବୀର ପାଶବିକତାରେ !

ପ୍ରାଣର ଗମ୍ଭୀର କୋଣରେ
ଧରି ନିଜ ତିନୋଟି ସନ୍ତାନେ,
ଠିଆହୋଇ ପାପଲିପ୍ତ
ଏ ପତିତା ପୃଥିବୀ-ଅଂଗନେ
କ୍ରୁଦ୍ଧ ସତ୍ୟ,
ସମାଜର କୁତ୍ସିତ କାହାଣୀ
ନାହିଁ ଭୟ,
ଅଛୁ ମୃତ୍ୟୁ, ପଛେ ତବ ଅଛୁ ମୋ ଲେଖନୀ ।।

ଅଛନ୍ତି ତିନୋଟି ଶିଶୁ ଚନ୍ଦ୍ରଜିତ୍[୧], ଦୁରନ୍ତ ପିନାକୀ[୨]
ଅଛଇ ମନୀଷା[୩] କନ୍ୟା, ଏମାନେ ତ ମମ ତିନିଆଖି ।।
ସ୍ୱାର୍ଥର ଦୃଷ୍ଟିର ତୀର ମୋ ପୌରୁଷ ଉଗ୍ର-ବକ୍ଷେ ବୋଲା
ମମ ମାତୃତ୍ୱର ଗ୍ରନ୍ଥେ ଏମାନଙ୍କ ଶୈଶବ ସେ ଦୋଳା ।।

ଆଗୋ ମୋର ବକୁଳ[୪]ର ସ୍ରଷ୍ଟା !
ଶଂକିତ ହୁଅନା ଦେଖି ଅନ୍ତରର ମରୁଭୂମି କାଷ୍ଠା ।।
ତାହା ମୋର ଉତ୍ସଭୂମି, ତପୋବନ ପ୍ରିୟ
ପୁତ୍ରବଧୂ ରୂପେ ତାରେ ଭକ୍ତିଭରେ ଦିଅ, ଅର୍ଘ୍ୟ ଦିଅ ।।

। କଟକ ।
୧୫ ଅକ୍ଟୋବର, ୬୯
।। ନିଶାନ୍ତ ।।




---

[୧]ଚନ୍ଦ୍ରଜିତ୍—କବିଙ୍କର ସର୍ବ କନିଷ୍ଠ ପୁତ୍ରର ନାମ : ୧୯୬୯ ଜୁଲାଇ ତା।୨୪ରିଖ (ଯେଉଁ ଦିନ ଆମେରିକାର ଆପୋଲୋ ମହାକାଶ ଯାତ୍ରୀଗଣ ଚନ୍ଦ୍ର ବିଜୟ ସାରି ଭୂ-ପୃଷ୍ଠକୁ ଫେରୁଥିଲେ) ଦିନ ତାର ଜନ୍ମ । ସେଥିପାଇଁ ଓଡ଼ିଶାର ଭୂତ ମୁଖ୍ୟମନ୍ତ୍ରୀ ଶ୍ରୀ ନବକୃଷ୍ଣ ଚୌଧୁରୀ ତାକୁ ଦେଖିବାକୁ ଆସି ତାର ନାମକରଣ କରିଥିଲେ 'ଚନ୍ଦ୍ରଜିତ୍' ।

[୨]ପିନାକୀ—କବିଙ୍କର ୮ ବର୍ଷ ବୟସର ସବା ବଡ଼ପୁଅ । [୩]ମନୀଷା—କବିଙ୍କର ୫ ବର୍ଷର ଏକମାତ୍ର କନ୍ୟା । [୪]ବକୁଳ—କବିଙ୍କର ସହଧର୍ମିଣୀ ।

# ସର୍ପଧାତ୍ରୀ

କିଏ ସେ ତମେ
କିଏ ସେ କହ !
ନେଇଛ ଢାଲ
ଅସ୍ତ୍ର-ଲୁହ
ଅସ୍ତ୍ର-ଯାଅ
ଅସ୍ତ୍ର ଯାଅ ?

କିଏ ସେ ରଚ
ମୃତ୍ୟୁ-ଗ୍ରସ
ନିର୍ବାଣର
ପୂର୍ବାଭାସ
ଯାନ୍ତ କାହିଁ
ଅସ୍ତ୍ର ଯାଅ ?
ଟିକିଏ ରୁହ
ଟିକିଏ ରୁହ !

ହୋଇଛ କିବା
ଅଙ୍ଗ କ୍ଷତ !
କରିଛ କେବା
ବର୍ଚ୍ଛାଘାତ !
କିଏ ସେ ତମେ
ହସୁଚ ହସ ?
ମାଦକହୀନ
ଶୁଷ୍କ-ହସ ।

କିଏ ସେ ତମେ
ମହାଦ୍ୟୁତ ?
ଜଳାଅ ବସି
ଅସ୍ତ-ବତ
କାହିଁକି ତୁମେ
ଅସ୍ତ ଯାଅ ?
ଟିକିଏ ରୁହ !

ତୁମେ ତ ଯାଅ
ମୁହିଁ ତ ଅଛୁ
କାର୍ଯ୍ୟ ମୋର
ସରିନ କିଛୁ
ଯିବାକୁ ହେବ
ସୁଦୂର ପଥେ
ଧ୍ୱାନ୍ତରାତେ,

ଟିକିଏ ଦିଅ
ଚରଣ ଧୂଳି,
ଅଂଶୁ ଡାଳି
ଗଢ଼ିବି ମୁଁ
ଶକ୍ତିବ୍ୟୂହ,
ଟିକିଏ ରୁହ ।

ପଶ୍ଚାତେ ମୋ
ଉଠୁଛି ମାତ
ନିବିଡ଼ ଘନ
ଦୁଃଖ-ରାତ —
ଅନ୍ତରାଳୁ
ଶୁଭୁଛି ଖାଲି
କୃତାନ୍ତର
ଚରଣ ଗାଳି ।

କର୍ମେ ମୋର
ପୀଡ଼ିତ-ସ୍ନାୟୁ
ଏଇ ଯେ ଉଠେ
ଘୂର୍ଣ୍ଣିବାୟୁ,
କୁଟୀର ମାଳେ
ପକ୍ଷୀ ଡାଳେ
ଗଣ୍ଡ ଭିଜେ
ନୟନ ନୀରେ
ଦାନ୍ତ ଫାଟେ
କାନ୍ଦଣାରେ
ଧବଳ ହୁଏ
କୃଷ୍ଣ-ଗଚ୍ଛ
ରକ୍ତଜବା
ମନ୍ଦହାସ
ନେଇଲେଣି
ଲୁପ୍ତ ହୁଏ
ତପ୍ତ ଲୁହେ
କାହାର ଅବା !

ଅମୃତ ଶିରେ
ଚନ୍ଦ୍ରମାରେ
ଗୃଧ୍ର ପଲ
ଚନ୍ଦ୍ରାକାରେ
ଝମ୍ପି ନିଏ
ମଣିଷ ଆୟୁ
ତୀକ୍ଷ୍ଣ ତାର
ଚଞ୍ଚୁ ଧାରେ ।

ଭଣ୍ଡ ଆଜ
ଦଣ୍ଡମାରେ
ଜୀବନ ବଡ଼-
ଦାଣ୍ଡପରେ
ଏଠକବେଳେ
ଯାନ୍ତୁ କିଆଁ
ଅସ୍ତ ଯାଅ ?
ଟିକିଏ ରୁହ !

ତମର ବନେ
ସନ୍ଧ୍ୟା ଆଜ
ସତ୍ୟ-ଶିବ
ବନ୍ଧ୍ୟା ଆଜ
କାଶ୍ୟପର
ଶିଷ୍ୟ ଆହେ
ଖାଲି ମୁଁ ଗୃହେଁ
ତମର ପଦ-
ରୌଦ୍ର-ରେଣୁ
ପଶ୍ଚିମର
ଆକାଶ କୋଣୁ,
କଂପୁ ଧରା
ଚୂର୍ଣ୍ଣ ହେଉ
ଅମୃତ କାରା

ତମର ଘୋଡ଼ା
ଝାପୁର ତାଳେ
ନାଚୁ ହେ ନାଚୁ
ରୁଦ୍ର-ତାଳେ

ମୈତ୍ରୀ ଆଉ
ପ୍ରୀତିର ଢେଉ
ବିଶ୍ୱଜନ ବକ୍ଷତଳେ
ଶାନ୍ତି ନଦ
ମଣିଷ ଶେଉ
ଭସ୍ମ ହେଉ
ଦସ୍ୟୁ-ବ୍ୟୂହ
ପାଛୁ ଆହେ
ଟିକିଏ ରୁଦ୍ର ।

>V<

# ସ୍ୱପ୍ନ

ବନ୍ଦନା କେହ୍ନ ଗାଇବାକୁ ନାହିଁ ବାନ୍ଧବାରେ,
ନିଜ ବନ୍ଦନା ଗାଇ ଗାଇ ଯିବା ସୁଦୂର ପଥ,
ଯେ ପଥେ ଗଲେଣି ଧନ-ଦୂନିଆର ଯାତ୍ରୀ, ବାରେ—
ସେ ପଥେ ଗ୍ଭଳିବା ଆମର ଜୀବନ-ଯାତ୍ରା ରଥ ।

ଯେଉଁ ପଥେ ଶୁଭେ ଆଗାମୀ ଉଷାର ତୂର୍ଯ୍ୟ ନାଦ
ଯେଉଁ ପଥେ ଟଳେ ସ୍ୱଭେଦର ଶତ ଜୀର୍ଣ୍ଣ-କାର୍,
କୋଟି-ଶତ୍ରୁଦର କଂଠ-ଉଠର ବଜ୍ରନାଦ—
ଯେଉଁ ପଥେ ଖସେ ହତ୍ୟାକାରୀର ହାତରୁ ଛୁରୀ ।

ଦେଖି ଦେଖି ଯିବା ଯାତ୍ରା-ପଥର ପାର୍ଶ୍ୱେ ଦୁଇ –
ସ୍ୱନା ମଜୁରରେ ଗଢ଼ିଉଠେ କେତେ ହର୍ମ୍ମ୍ୟମାଳା !
କୁଳି-କଲୋନୀର ଝିଣଘରେ ଯେତେ ଶୁଷ୍କ ହୋଇ
ପଶୁଛନ୍ତି ଗୁଡ଼ି ପୁଂଜି ଶାସନ କର୍ମଶାଳା ।

ସେହି ସମାଜର ସନ୍ଧାନ-ପଥେ ଯିବା ଗୋ ଆଜି—
ଯେଉଁ ସମାଜରେ ଅକାଳେ ବୃଦ୍ଧ ହୁଅନ୍ତି ଯୁବା,
ମଣିଷ ଭାବେନ୍ତି, "କଅଣ ଖାଇବେ ପିଲାଏ ଆଜି ?"
ଦଶେନ୍ତି ଯେଉଁଠି ଭିକାରୀଦଳର ଯାତ୍ରାଶୋଭା ।

ଯାତ୍ରା ଆମର ସେଇ ସମାଜକୁ ଭେଟିବା ପାଇଁ
ପଥେ ସାଥି ଆମ ବର୍ଷା, ତୋଫାନ, ଘୂର୍ଣ୍ଣିବାତ,
ଆମେ ଗୋ ପୋତିବା ମେରୁ-ନାଭିମୂଳେ ଝଂଡା ସହି !
ପଦାଘାତେ କରି ବାଧାର ପ୍ରାଚୀର ଚୂର୍ଣ୍ଣୀଭୂତ ।

ଏଇ ଏଣେ ଦୂରେ ନେତ୍ର-ପଥରେ କେଦାର-ମାଳା –
ଉଦ୍‌ଭାସିଉଠେ ଧାନ କେଣ୍ଡାର ସ୍ୱର୍ଣ୍ଣ ଆଭା,
ପୁଞ୍ଜିବାଦର ମନ୍ଦିରୁ ଖସେ ଜୀର୍ଣ୍ଣଶିଳା
କ୍ଳାନ୍ତ-କୃଷାଣୀ ସଜାଏ ନଜର ତାମ୍ରଗଭା ।

ଆସ ବାନ୍ଧବ ! କରନାହିଁ ଡେରି, ନମିଷେ ଆଉ
ନୂତନ ଯୁଗର-ପଦପାତ ସହୁ ଗଲଣି ଶୁଣା,
ଘିବଲଣି ଏତ ନୂଆ-ସକାଳର ପହିଲ୍ କାଉ
ଝଂକାର ଉଠେ ଜୀବନର ଶତ ଭଗ୍ନ-ବୀଣା ।

। କଟକ ।
୭ ନଭେମ୍ବର, ୪୮

*★*

# ପ୍ରଶ୍ନବାଚୀ

—ଏକ—

ଆମେ ଯେ ଦୁଇଟି ନଷ୍ଟ-ନୀଡ଼ର ପକ୍ଷୀ
ଆମେ ଯେ ଦୁଇଟି ଭଗ୍ନ-ବୀଣାର ତାର,
ଆମେ ଯେ ଚାଲିଛେ ସୀମାହୀନ ପଥେ, ସଖି,
ଦେଖି ଦୁଇପାଖେ ଦୁନଆର କାରବାର ।

ଆମେ ଯେ ଛୁଟିଚେ ପ୍ରେମ-ଯମୁନାର ସୁଅ
ଆମେ ଯେ ଦୁଇଟି ତ୍ୟକ୍ତ ଅଗ୍ନି-କଣା,
ଆମେ ଯେ ଟାଳିଚେ କୋଟି ବାଧା-ମହୀରୁହ
ଆମେ ଯେ ଦେଖିଚେ କେତେ ପ୍ରାଣ ଝକା-ଝଣା ।

ଆମେ ଯେ ଦୁଇଟି କପୋତ-କପୋତୀ, ଆଜି
ନୀଳ ନଭ ତଳେ ଚାଲିଚେ ପକ୍ଷ ପିଟି,
ଆମେ ଯେ ମୁକ୍ତ- ପଥବାହକ ସାଜି
ଡେଣା-ଝୁଣ୍ଟିକାରେ ମୁକ୍ତ-ମରୁତ କାଟି ।

ଆମେ ଯେ କରିଚେ ମୃତ୍ୟୁରେ ଉପହାସ
ଆମେ ଯେ ଗାଇଚେ ଜୀବନର ସଂଗୀତ,
ଆମେ ଯେ ଜୀର୍ଣ୍ଣ କରି ଅମୃତ, ବନ୍ଧୁ
ଆମେ ଯେ ଦେଇଚେ ସୃଷ୍ଟିର ଇଂଗିତ ।

ଆମେ ଯେ ସଜନୀ
ସ୍ୱପ୍ନ ଦେଖିଚେ
ଆମେ ଯେ ଭାବିଚେ
ଯେ 'ରଜନୀ' ସାଥେ

'ପଶ୍ଚିମ' ପଥେ ଆଇ—
'ପୂର୍ବ' ପଥର ଅବା !
ରଜନୀ ଆସିବ ପାଛୁ
ସରି ତୋ କୃଷ୍ଣ-ଗନ୍ଧ ।

ଆମେ ଯେ ଗାଇଚେ
ପ୍ରଳୟର କୋଳୁ –
ଆମେ ଯେ ଗ୍ରନ୍ଥିଚେ
ଆମେ ଯେ କରିଚେ

ପ୍ରଭାତ ପକ୍ଷୀ, ଉଠି—
ନୂଆ ମଳୟର ଗୀତ,
ତୃଷ୍ଣି-ଅକ୍ଷୀ-ମୁଠି
ପ୍ରାଣ କ୍ଷେତ କର୍ଷିତ ।

ଆମେ ଯେ ନର୍ତ୍ତିଚେ
ଆମେ ଯେ ବାନ୍ଧିଚେ
ଅଯୁତ ସୋପାନ
କରିଚେ ସୁଗମ

ନୂତନ ଶସ୍ୟ ଏଥେ
ଦୁନିଆ ଦାଂତେ ରଥ,
ଗଢ଼ିଚେ ଚରଣପାତେ
ଆମେ, ଦୁର୍ଗମ-ପଥ ।

—ଦୁଇ—

ଏଇ ସବୁ କାମ
କେଉଁ ଏକ ତରୁ-
ସେ 'ମାଡ଼'ରେ ଯେବେ
ସେ 'ମାଡ଼'ରେ ଯେବେ

କରି ଯେବେ ଆମେ, ପ୍ରିୟା,
ଶାଖାରେ ରଚବା ନୀଡ଼,
ଜଳବ ଅକାଳେ ନିଆଁ
ଉଠିବ ଅଦାନ ଝଡ଼ !

ତମ-ମୋ' ଭିତରେ
ବିଚ୍ଛେଦ ଆଣି
ନିଧୁବନ-ବାସେ
ଯେବେ ଦେବ ଦେଖା

ଯେବେ ଗୋ ଠେକିବ ମଥା—
ବିଭେଦର ଦରବାର,
ବିରହର ନାଳ ଫିତା—
ଅଶ୍ରୁଳ ହାହାକାର ।

ଜୀବନ ଛଂନ୍ଦ
ପ୍ରତିବଂଧକ
କେଉଁ ପନ୍ଥା ଗୋ
କହ, ନ ବରିବା

ପ୍ରତିହତ ହେବ ଯେବେ
ଘାତେରି ହୋଇବ ଠିଆ,
ବରିବା ସକଳ ? ତେବେ—
କିଆଁ ଧ୍ୱଂସର ରାହା ?

ନିର୍ଗନ୍ଧ ଫୁଲରେ
ମୃତ୍ୟୁର ନୀଳ-
ଅନ୍ୟର 'ପ୍ରେମ'
କିଆଁ ଦେଖାଇବା

ମୃତ୍ୟୁ, ମଡ଼କ
ସାଜିବାନି କିଆଁ
ଖୋଳିବାନି କିଆଁ
ସାରିବାନି କିଆଁ

ଉଠିବାନି କିଆଁ
ଜଣା କରି ଯେତେ
ଲୁଟିବାନି କିଆଁ
ରୋଧିବାନି କିଆଁ

ଟକ୍ସର ଚଢା
ପିଶାଚ-ପିଶାଚୀ
କିଆଁ କରିବାନି
ସଧବା ହେଉ ସେ

ନବୀନ ନୂତନ,
ମାରିବାନି କିଆଁ
ଝଡ଼ ସମ ଆମେ
ଅନ୍ୟ କୁଟୀରେ

ଦେବାନାହିଁ ଆମେ କିଆଁ —
ଚୁଂବନ ସେତେବେଳେ, ? —
ଦେଖିବା କାହିଁକି ପ୍ରିୟା ?
'ଉଦାରତା' ମହୀତଳେ ?

ରୋଗ, ମହାମାରୀ ରୂପ
ଧ୍ୱଂସ, ଘୂର୍ଣ୍ଣିବାୟୁ ?
ହତ୍ୟା ଅଂଧକୂପ ?
ଅନ୍ୟର ପରମାୟୁ ?

ଆମେ କ୍ୟାନ୍ସର ବ୍ରଣ— ?
ଅନ୍ୟ କଂଠ-ତଟ,
ଅନ୍ତଃସତ୍ତ୍ୱା ଭ୍ରୂଣ ?
ଅଭ୍ୟୁଦୟର ବାଟ ?

ଶକ୍ତ-ଲଲଟେ ମାରି—
କିଆଁ ଆମେ ହୋଇବାନି ?
କର-କଂକଣ ଗୈର —
ହେଉ ବା ସୀମନ୍ତିନୀ !

ଦଂପତି ବୁକେ ଗୈଠ —
ସାଜି ଉତ୍ଫଣ ଅହି ?
କିଆଁ କରିବାନି ନାଟ—
କହ ପାରିବ କି ସହି ?

| କଟକ |
ଜୁଲାଇ, ୮୯



# କବର ଲଭିଲ ଆତ୍ମା

ଆଉ ଏ ଜୀବନେ ହେବନାହିଁ ଦେଖା
ଦେଖାହୋଇ କିବା ଲଭ ?
ତମ ସୁଂଥାର ଶୁଭ୍ରାପଥ ବୁକେ
କନ୍ୟ-ବଧୂ ଗୌରବ
ଆଙ୍କିଥିଲ ଯେ ସିନ୍ଦୂର ଗାର
ସିଏ ନିଭିଗଲ କରି ହାହାକାର
ତମେ ନାହିଁ ଆଜି, ପଡ଼ିଛି ରହିଛି
ତମରି ସ୍ମୃତିର ଶବ !

|| ୨ ||

ପାପୀକୁ କେବେଁ ମୁଁ ଦେଇନାହିଁ ଦୋଷ
ପାପକୁ କରିଛି ଘୃଣା,
ତମପାଇଁ ନାରୀ, ଥୋଇ ତରବାରି
ବଜାଇ ପ୍ରୀତିର ବୀଣା ।
ବିଦ୍ରୋହୀ ମୋର ଏଇ ଯଉବନ
କେତେ ଲାଂଛନା, କେତେ ଅପମାନ
ତମରି ପାଇଁ କି ନ ସହିଛି ପ୍ରିୟେ
ସେତ ଅତି ଜଣାଶୁଣା !

॥ ୩ ॥

କେଉଁଠାରେ ଥିଲ, କେଉଁଠୁ ଆସିଲ
ହେଲ ମୋ ଶୟନ-ସାଥୀ,
'କଣ୍ଟବଧୂ' ରୂପେ ନିଗାଡ଼ି ନେଲ ମୋ
ଯାହା ଥିଲା ସ୍ନେହ ପ୍ରୀତି ।
ଯାହା ଜୀବନର ଦୁଃଖ-କଷଣ
ଭୁଲିଥିଲି ପାଇ ତମ ଦରଶନ
ହଠାତ୍ ତମର ବିଷ-ଦଂଶନ
ଜାଳିଦେଲା ମୋର ସ୍ମୃତି ।

॥ ୪ ॥

ମାପି ପାରିଲନି ଭୁଲେ କେବେଁ ଦିନେ
ମୋ ପ୍ରୀତିର ଗଭୀରତା
ସେହି ଦୁଃଖରେ ଅଦିନେ ଆସିବ
ଦିନେ ମୋର ସ୍ଥବିରତା ।
ଯେଦିନ ବୁଝିବ ଆପଣାର ପାପ
ସେଦିନ ଜଳିବ ନିଆଁ ଅନୁତାପ
ସେଦିନ ପଡ଼ିବ ମନେ ବାରବାର
ଏଇ କଣ୍ଟଟିର କଥା ।

॥ ୫ ॥

ଦିନଆର ମଧୁ ଚଖା ସରିଗଲେ
ହୁଏତ ଆସିବ ଫେରି,
ହୋଇଥିବ ଯେବେ ଗତ-ଯୌବନା
ସବୁ ଯାଇଥିବ ସରି !
ସେତେବେଳେ ଯେବେ ହେବ ଆମ ଦେଖା
ନିଭିଥିବ ମୋର ଆଖିର ତାରକା
ପଡ଼ିଥିବ ମୋର ଭଂଗାହୃଦୟ
ଦେଖିବ ନୟନ ଭରି ।

॥ ୬ ॥

ବହୁ ବିଳମ୍ବ ଅଛୁ ଆସିବାକୁ
ଅନାଗତ ସେହୁଦନ,
ହୃଦସ୍ତୂପଟା ମୋର ପାଲଟି ଯାଇଛୁ
ଯୀଉଘର ଶମଶାନ ।
ଏଠି ମୀରବତା କରେ ତା ରାଜୁତି
ବିଚ୍ଛେଦ-ଚିତା ଜଳେ ଦିବା ରାତି
ନାଚେ ଦୁଃଖର ଝଞ୍ଜା-ତୋଫାନ
ନାଚେ ଅନ୍ଧାର ଘନ ।

। ୭ ॥

ଜାଣି ମୁଁ ନ ଥିଲି ତମେ କରୁଥିଲ
ଅଭିନୟ ମୋର ସାଥେ,
ହେ ଅଭିନେତ୍ରୀ, ଦେହଟା ତମର
ଏତକ ନିଷ୍ଠା ସତେ !
ଛଳନା ତମର ସହଜାତ ଗୁଣ
କଠିଳ ତମର ଅନ୍ତଃକରଣ
ଭୁଙ୍ଗୁଛୁ ଆଜ ମୋ ଅନାବିଳ ପ୍ରାଣ
ବସି ପୃଥ୍ୱୀର ପଥେ ।

॥ ୮ ॥

ଯାହାଥିଲା ମୋର ସବୁ ତ ସଣ୍ଟୁ
ତମ ସୁରକ୍ଷା ଲାଗି
ତମେ ଘୁରବୁଲ ସୁଖ ଦକ୍ଷାନେ
ମୁଁ ବସିଛୁ ବଇରାଗୀ ।
ଆଜ ଭୁଟିବନ ଭୁଲ୍ ବୁଝାମଣା
ମୃତ୍ୟୁ ରଖିବ ଏ କଵ ଠିକଣା
ଭେଟିବାକୁ ମୋତେ ଆସିବ ଯେଦନ
ତାହାଠାରୁ ନେବ ମାଗି ।

॥ ୯ ॥

ସବୁ ଜଳିଯାଇ କୁହୁଳୁଚି ମୋର
ଚନ୍ଦ୍ର-ଚନ୍ଦାର ଧୂଆଁ
ଅପରାଜିତ ମୁଁ ନୁହେଁ ତ ଆଉ ଗୋ
ଧଣବନ ମୋର ନାଆଁ ।
'ବିଜୟଲକ୍ଷ୍ମୀ' ପ୍ରକୃତ ତୁମେ
ତମର ରୂପର ମରୀଚିକା-ପ୍ରେମେ
ସରଗଲା ନାର, ମରଗଲା କବି
କବର ଲଭିଲା ଆହା ! ୨



। କଟକ ।
୫ ମଇ, ୬୮

# ନବ-ଜୀବନର କାବ୍ୟଧାରା

ଗାଲ୍‌ଟିକ, କବି, ଚନ୍ଦ୍ରାବତ୍‌ କ ପଢ଼ିଲ ଶୋଇ ?—
ବୁଝ'ଆର ଏହି ଦୁର୍ଦ୍ଦିନ-ଘନେ ହେ ମନ୍ତ୍ରାରଥୀ !
ଉଠିବ ନାହିଁ କି ଶାଣିତ-କୁଠାର ଲେଖନୀ ତବ ?
ଥରୁଅଛି ଦେଖ, ଶ୍ରାନ୍ତ-ଧରାର କୋମଳ ଛାତି ହେ······
କ୍ଳାନ୍ତ-ଛାତି ।

"ଶାନ୍ତି" ନାମରେ କିଏ ସେ ଛୁଟିଛି ଧ୍ୱଂସ-ପଥେ
ଶଂକା ଜାଗିଛି ଅସ୍ପୃଶ୍ୟ-ଜନର ବକ୍ଷ ତଳେ,
ହାଡ଼କୁଡ଼ ପରେ ଶାର୍ଦ୍ଦୂଳ ଆଜି ନୃତ୍ୟ ରଚେ
"ମାନବିକତା"ର ଉଶ୍ଣିମ ବାଜେ ମଶାଣିପଦାରେ······
କବର ତଳେ ।

'ମୁକ୍ତି' ପାଇଁକି ମଣିଷ ଛୁଟିଛି ଦୃପ୍ତ-ପଦେ
ଏଇ ଉଠେ ଅନା, ଗୋଆ ଉପକୂଳେ ରକ୍ତ-ଝଡ଼,
ଆଲ୍‌ଜେରିଆରେ ଯୁଦ୍ଧ 'ଦଗଲ' ପକ୍ଷ ଝାଡ଼େ
ଉପନିବେଶର ଛାତିରେ ବସଇ ଶତ-ହାତୁଡ଼ିର······
ଶକ୍ତି-ମାଡ଼ ।

ନୀଳ-ପାରାବାରେ ଆଣବିକ-ନିଆଁ ଜଳୁଛି ଆଜି
'ଶ୍ୱେଜେନ୍ ବର୍ଗ ଦଂପତି' ପ୍ରେତ ମାରୁଛି ହାଇ,—
ଜାରଜ ଦେଶର ଫାଶୀକାଠ ତଳେ-ରକ୍ତ ସୁଅ
କୋଟି ଜନଗଣ କଂଠୁ ଶୁଭୁଛି—"ଶାନ୍ତି କାହିଁ"ରେ
"ମୁକ୍ତି କାହିଁ ?"

ଗଢ଼ି ଉଠେ କେତେ ନୂଆ 'ହିରୋଶୀମା' ବିଶ୍ୱ-ବୁକେ !
ମନ୍ତ୍ରଣା ଗୃହେ 'ହ୍ୱାଇଟ୍ ହାଉସ୍' ଛାତର ତଳେ,
'ରକେଟ୍' ଛୁଟଇ ନକ୍ଷେତ୍ରମଣ୍ଡଳ ବକ୍ଷଚିର—
ଏଇ ପଟ୍ଟେ କା'ର ସୈନ୍ୟଗୁହ୍ମିଣି ତୋଟା, ବଲମାଳେ···
ପଲ୍ଲୀଧାରେ ।

ଅଣୁବୋମା ଆଉ ଉଦ୍‌ଯାନ ବୋମା, ରକେଟ୍ ଘାଟି
"ଗଣତନ୍ତ୍ରର ରକ୍ଷା" ନାମରେ ହେଉଛୁ ଠିଆ,
କେତେ ସୁଖ-ନୀଡ଼େ ଜଳାଇବା ପାଇଁ ମରଣ ଜୁଇ—
ନୀଳ-ଦରିଆର ବୁକୁ ଚିରି ଗୃହେ—କେତେ ରଣ-ତରୀ ··
ମୃଚ୍ଛ-ନାଆ ।

ନିଜ ଦେଶେ ତୋର 'ସ୍ୱାଧୀନତା' କାହିଁ ? କେଉଁଠି ଅଛୁ ?
ଜୀବନକୁ ଆଜି ସ୍ୱୈରକରେ କେଉଁ ଜୀବନ-ଶୃଙ୍ଖ ! *
ବଉସ୍ତ୍ରତାର ଆହ୍ୱାନ ଆସେ ଦୁଃଶାସନର-ଶାସନକଳୁଁ
ଏଇ ଦେଶେ ଦୂରେ ! ଜୀବନ-ଜଙ୍ଗାଳେ ମରଣ ଘାଟରେ···
ଅସ୍ତ୍ର-ଘାଟ ।

ବଧୂ-କନ୍ୟାର ଇଜ୍ଜତ ହୁଏ ବିକି ଆଜି
'ବିଜ୍ଞାପନ'ର ନାଗେ ଆଜି ଆମ ଭଗ୍ନୀ,-ବଧୂ,
କାଂଥ-ବାଡ଼ର ପୋଷ୍ଟରେ ଖାଲି ଦିଶେ ତ ଫୁଟି
ମୁକୁଳା ତନୁ କା, ସ୍ତନ-ମନ୍ଦର, ବିଂବଅଧର,······
ବଦନ-ବଧୂ !

ନୈତିକତାର ଝଂଡ଼ା ତ ଆଜି ଯାଇଛୁ ନଇଁ
ଭୌତିକତାର କେତନ ସାଥିରେ ଟେକିଛୁ ମଥା !
କେତେ କୁଡ଼ିଆରେ ଅକାଳରେ ଆଜି ଜଳୁଛି ନିଆଁ
ଜୀବନ-ଯାତ୍ରା-ପଥରେ ଶୁଭୁଛି ଧ୍ୱଂସ ଗାଥାରେ······
ମରଣ-ଗାଥା ।

---

* ସ୍ୱୈର ।

ଦେଖିବା ଯାଉଁକି ଆମ ଦ୍ରୌପଦୀ-ନଗ୍ନ ଜାନୁ—
ଦୁଃଶାସନର କଂଠେ ଜାଗିଛୁ, ମାତାଲି ଆଶା,
କେ କହେ ମରିଛୁ 'ଧୂର୍ତ୍ତି-ବସ୍ତ୍ର' ପରଂପରା ?
ମୁଁ କହେ ସତେ ପରାଧୀନତାର ପୀଡ଼ନ ନିଶାରେ·· ···
ନିବିଡ଼ ନିଶା ।

ଭୀମ, ଅର୍ଜୁନ, ଯୁଧିଷ୍ଠିର ତ ନୀରବ ଆଜି
କେତେ ବିବସନା ପାଂଚାଳୀ ବସି ଲେଉଟ ଡାକେ,
ଲେଉଟ ନୁହେଁ ସେ ! ବଜ୍ରାଭିଶାପ ଅଗ୍ନି-ଲିପି
କଶ୍‌ଘାତ କରେ କୁରୁସଭା ରୂପୀ 'ରାଜ୍ୟସଭା'ର
ହର୍ମ୍ମ୍ୟ ତଳେ ।

ଦିଲ୍ଲୀ-ନଗରେ ଆଜି ବି ଗଡ଼ୁଛି କ୍ରନ୍ଦନ ଦଶା
ପଣରଖେ କିଏ ନିଜ ପ୍ରେୟସୀ ମା, ଶକ୍ତି-ବାହ୍ୱା !
ଜନକ ଚାଲିଇ ଛାଡ଼ି ଭିଟାମାଟି— ଜନନୀ ଦୂରେ—
ମରଣ ନାଅରେ— ସନ୍ଧାନ ଆଶେ ଜୀବନ ରାହାର···
ଶାନ୍ତି-ରାହା ।

ଶସ୍ତା ଆଜି ତ 'ସ୍ୱରାଜ' ବଜାରେ ଜୀବନ-ଭାଉ
ଶୋଣିତ ନାହିଁ କା ଶିରାରେ – ଛୁଟିଛୁ ଲୁଆର ସୁଅ,
ପ୍ରୀତି ବଦଳରେ ପୂରିଅଛୁ ଖାଲି ଧପ୍‌ପାବାଜି
ମୁଂଡ ଟେକିଛୁ ପଦଲେହନର ଚକ୍ରବ୍ୟୂହରେ····
ଘୃଣ୍ୟ ବ୍ୟୂହ ।

ଶୋଷଣ-ସାପର ଦଂଶନାଘାତେ ଜଳୁଚ ନିଆଁ
କେତେ ଜୀବନର ଉପସଂହାର ଯାଚେଇ ଆସେ ।
ଉଡ଼ିଯାଏ କେତେ ଶିଶୁର କରେଟି, ଦରେଟି ହସ
ଚଳିତ ଯୁଗର ଦେଶୀ-ଦଶାନନ ଚନ୍ଦ୍ରହାସ[1]ର···
ଅଟ୍ଟହାସେ ।

[1] ରାବଣର ଖଡ଼୍‌ଗ ।

ଘନ ବଦ୍ରୂପ ଶୁଭୁଛି ତ ଆଜି ଜୀବନ-ପୁରେ
ଏତେବେଳେ ତମେ ଯେତେ ମସୀଜୀବୀ ଶୋଇଛ କିଆଁ ?
ଜାଗ ମହାକାଳ ଧର ହଳାହଳ ତ୍ରିଶୂଳ କରେ
ଢାଳିଦିଅ ତମ ମସୀର ଗଂଗା, କାବ୍ୟ-ନିଆଁ ହେ ··
ରକ୍ତ-ନିଆଁ ।।

ଲଂବିତ ବେଣୀ, ବାଂକ ଚାହାଣୀ, ମଂଦ ହାସ
ପେଲିଦିଅ ଦୂରେ ଲେଖନୀରୁ ତବ ! ଗୋପନ ଭାଷା,
ନୂତନ ଉଷାର ଗର୍ଭବେଦନା ହୋଇଛି ସୁରୁ
ଖିଲ୍‌ଖିଲ୍ ଶୁଭେ ତାହାର ଶିଶୁର ନୂତନ ଭାଷାରେ···
ନୂତନ-ହସା ।

ଆଖିର ନିଆଁରେ ପଂଗପାଳର ଶାସନ ଜାଳ !
ଘନ ଅଂଧାରେ, ନୂଆ ଛନ୍ଦରେ ଦେଖାଅ ପଥ,
ମନ-ମଂଦିରେ ଜଳାଅ ନୂତନ ଆଶାର ଦୁଲ ।
ପଥ ବନ୍ଧୁରେ ବାହିନିଅ ଜାତି-ମୁକ୍ତି ରଥ ହେ···
ଦେଖାଅ ପଥ !

ଇଂଗିତେ ତମ ପ୍ରଳୟ-ପାଗଳ ରୁଦ୍ର ନାଚୁ
ଖପୁରେ ଉଲ୍‌କା ବହିଯାଉ ଖାଲି ଗରଳ ଧାର,
କରବାକୁ ହେବ ନୂତନ ଯୁଗର ସଂଧାନରେ ।
ଭେଟିବାକୁ ହେବ ରବି ଶେଷର ନୂଆ-ଜୀବନର···
କାବ୍ୟତୀର ।

। କଟକ ।
୨୨ ଜୁନ୍, ୪୮



# ଆଜି ଏଇ ମହା ପାର୍ବଣରେ

କି ଗୀତ ଲେଖିବ
ଆଜି ଏଇ ମହା ପାର୍ବଣରେ        ଭଉଣୀ ମୋର ?
କରାଘାତ କରେ
ବାରବାର ଆସି ରୁଦ୍ଧଦ୍ୱାରେ,        ମହିଷାସୁର ।

ପଦାଘାତେ ତାର
ସାରା ଜାତିଟାର ବକ୍ଷ ଫାଟେ,        କକ୍ଷ୍ୟ-ଚ୍ୟୁତ —
ହୋଇ ପଳାଏ କେ
କାହା କୁଡ଼ିଆରେ ଦୃଷ୍ଟି ହଠେ,        ମୃତ୍ୟୁ ଗୀତ :

ମହିଷାସୁରର
ବଢ-ମୁଠାର ବଜ୍ରା-ଘାତେ,        ହୋଇଛନ୍ତି ଚୂନା,
କେତେ 'ପାର୍ବତୀ'
ହାତର ଚୂଡ଼ି ତ ଏ ରାଜପଥେ,        ଅନା ଗୋ ଅନା !

କେଉଁ ଯୁଗେ ସିନା
ଦୁର୍ଗା ମାରିଲେ ମହିଷାସୁର—        ପୁରାଣ କହେ,
ଦେଶ ସାରା ଏଇ
ଘୂରି ବୁଲେ ସେଇ ଆତ୍ମା ତାର        ଜୀବନ ଦହେ ।

ଏଇ ଶୁଭେ କାର !
ଜନପଦ, ପୁର, କୁଟୀର ତଳେ,        କାତର ଡାକ,
ମୃତ୍ୟୁ ପଥରେ,
ମରଣ-ରଥରେ କିଏ ସେ ଚଳେ,        କେ ନାଗରିକ !

ସ୍ବରଧାରେ ଶୁଭେ
ମହୁଷା ଦଳର ଚରଣ ସ୍ଖଳ — ଯନ୍ତ୍ରୀଦଳ —
"ମନ୍ତ୍ରୀ" ବେଶରେ,
ଖଦଡ଼ ଖୋଳରେ ଝୁଲନ୍ତ ଖାଲ — ପଲକୁ ପଲ ।

ଖଜୁରି ଗଛର
କି ଘୁଣ ଗାଇବ କବିତା ଛଟେ — ଭଉଣୀ, ମା'ଆ ?
କେଉଁ 'ବିଧାତା' ସେ
କ ଲେଖି ଯାଇଛି ଜାତର ଖିଲେ — ବୁଡ଼ୁଚ ନାଆ ।

ଆଜି ଏଇ ମହା-
ପାବଣେ ବସି ଦିଏ ମୁଁ ଡାକ— ପାହ୍ନଚ ଦିଓ
କେତେଦିନ ଆଉ
ପଡ଼ିଥିବ ହୋଇ ଭ୍ରଷ୍ଟବାକ ? — ଉଠ ଗୋ ମାଓ !

ମାଉଉଠ ଏଇ —
ଦୁର୍ଦ୍ଦିନ ବେଳେ କୁଟୀର ତଳୁ, — ରୋଷେଇଶାଳୁ,
ପଲ୍ଲି, ନଗର
ଜନପଦ ତଳୁ, ପ୍ରେମିକ କୋଳୁ — ଯନ୍ତ୍ରର ତଳୁ ।

ଯନ୍ତ୍ରି ଯେତେ ଅଛ
ଦଳିତା-ପତିତା 'ଗଉରୀ', 'ଉମା' — 'ସତ୍ୟଭାମା',
ବରହମପୁରର,
କଟକ ନଗରେ "ନର୍ସ୍" ନାମା, — ଯେତେକ ଶ୍ୟାମା ।

'ବ୍ଲକ୍' ଅଧୀନର
"ଗ୍ରାମସେବିକା" ଗୋ ରୁକ୍ଷ-ରୋଷେ — ସଢ଼ୁଚ ଯେତେ,
ରାଜାବଗିଚର
ମେହେନତ୍ରାଣୀ ଛିନ୍ନ ବେଶେ, — ଖଟୁଚ ଯେତେ ।

ଜାଗିଉଠ ଆଜି
ତନ୍ଦ୍ରା ଜଡ଼ିତ ନୟନ ମେଲି,          କବାଟ ଖୋଲି,
ଗୁଣ୍ଡ ଶିମୁଠା,
ଦରପୋଡ଼ା କାଠ ଚୁଲିରୁ କାଢ଼ି,          ପନାକୀ ଧରି ।

ଯାଅ ଏତେବେଳେ
ଭୈରବୀ ତୋଳି, ଗୋଡ଼ାଇ ଯାଅ          ଲଙ୍କା ଫେଇ,
କିଳିକିଳା ରବେ
ମନ୍ଦୁଷା ଶାସନ ଅଗ୍ରାଇ ଦିଅ,          ଚମକୁ ମଞ୍ଚ ।

ଯେତେ ଆଧୁନିକା
ଚପଳ-ଚରଣା, ନିତମ୍ବିନୀ          ଚପଳ ହାତେ—,
ଚୂର୍ଣ୍ଣକର ସ୍ନେହ—
ମନ୍ଦୁଷା ଶାସନ, ଦୁଲଇ ବେଣୀ          ଚପଳ-ଘାତେ ।

ସହସର ଭୁଜ
ଏକାଠି କର ତୋ କୃଷ୍ଣ-ଗଣ୍ଡ          ମୁକ୍ତ କର ।
କନ୍ଠେ ତୋ ପାଉ—
ଦସ୍ୟୁ-ଦଳର ମୁଣ୍ଡ ଶୋଭା,          ରକ୍ତ-ଗାର ।

। କଟକ ।
୧୦ ଅକ୍ଟୋବର, ୫୮

>✕<

# କାତ୍ୟାୟିନୀ

। ୧ ।

କା'ରେ ପୂଜା କର କହିବ କି ଥରେ
ହେ ମୋର ଦେଶର ମାଉସୀ, ନାନୀ,
ଏତ ନୁହେଁ ସେହି 'ଦୁର୍ଗା', 'ଗଉରୀ'
'କାତ୍ୟାୟିନୀ' ଗୋ କାତ୍ୟାୟିନୀ ।
ନିର୍ଜୀବ ଇଏ ମାଟିର ପିତୁଳା
କା ଲାଗି ସଜାଅ ମଂଦାର ଡାଲା ?
ମୃଣ୍ମୟୀ କେବେଁ ବୁକୁର ବେଦନା ପାରବ ଜାଣି ?

। ୨ ।

ଏତ ନୁହେଁ ସେହି ଦୁରିତ-ନାଶିନୀ, ଅଂକଶାୟିନୀ ଶଙ୍କରର,
କା'ରେ ପୂଜା କର କହିବ କି ଥରେ ପୂଜକ ଦଳ !
ଆଉ କେଇଦିନେ ମରିବ ସେ ବୁଢ଼ି,
ଅଂଗୁ ତାହାର ମାଟି ଦିବ ଝଡ଼ି
ପାରବନି ସିଏ ମହିଷାସୁରର ଗଡ଼କୁ ଜିଣି !

। ୩ ।

କଂଠ-ତଟକୁ ଫଟାଇ କାହିଁକି ପୂଜକ-ଦଳରେ ମନ୍ତ୍ର ବାଢ଼ ?
ପଶ୍ଚାତେ ତମ ଏଇତ ଉଠୁଚି, ଧ୍ୱଂସ-ଝଡ଼ରେ ଧ୍ୱଂସ-ଝଡ଼ !
ଏଇ ଶୁଭେ କା'ର ବଜ୍ର କୁହାଟ,
ଖୋଲିଯାଏ କେତେ ରୁଦ୍ଧ କବାଟ !
"ମଲି ମଲି" ଶୁଭେ ଚଉଦିଗେ ଖାଲି ପାରୁନି ଶୁଣି ?

। ୪ ।

ଜୀବନ-ଯାତ୍ରା ପଥରେ ତ ଆଜ ପ୍ରେତ-ପଟୁଆର ଛୁଟିଚ ଦେଖ !
ଛୁଟିଚ ତା ପଛେ ଦୈତ୍ୟ ମହୀଷା ଖଦଡ଼-ଭେକ ।
ହାତରେ ତାହାର ଟିକସ ଖଡ଼୍ଗ,
ସୃଷ୍ଟି କରେ ସେ ମୃତ୍ୟୁ-ମଡ଼କ
କୋଟିଏ କୁଟୀରୁଁ ଶିଶୁ-ଦରୋଟିକୁ ଖାଇବ ଝୁଣି ।

। ୫ ।

ଆଜ ଏତେବେଳେ ମର୍ଯ୍ୟାଦରେଖା ଟାଣି
ଏ ମୋର କଲମ ଉଚ୍ଚେ ଡାକେ :
କୃଷୀ, ମଜଦୁର, କବି, କଳାକାର,
ଅଧ୍ୟାପିକା ଗୋ ଅଧ୍ୟାପକେ !
ବଞ୍ଚ ତ ଅଛ ଯେତେ ଦୁର୍ବଳ,
କିରାଣୀ, ପିଅନ, ଚପ୍ରାସୀ ଦଳ
ପିକା ଟାଣି ଟାଣି ପିଏ ମରୁଅଛ ଶକ୍ସା ଟାଣି ।

। ୬ ।

ଘରେ ନାଇ ଦାନା, ପେଟେ ଓଦାକନା
ଦେଇ, ଅନ୍ୟରେ ବିଦ୍ୟା ଦିଅ
ଦରପେଟା ତମେ ଶିକ୍ଷକ ଦଳ
ଟିକଏ ଗୁହଁରେ···ଟିକଏ ଗୁହଁ !
ଦଳତା-ପଢତା ବଂଚାଙ୍କ ନାଗ୍ଣି,
କୁମ୍ଭୀ, ବିଧବା ଯେତେ କାଳୀ ଗୋଗ୍ଣି
ଗାଆଁ ଇସ୍କୁଲେ ପଢ଼ାଅଛ ଯେତେ ମାଷ୍ଟରାଣୀ ।

। ୭ ।

ଜାଣିଚ କି ତମେ, ଏଇ ଉତ୍କଳେ
ଜନ୍ମ ନେଇଛି ମହିଷାସୁର ?
ଏ ଜାତି ଗୃହରେ ଝଲସି ଉଠଇ
ତାହାର ତୀକ୍ଷ୍ଣ ଖଡ୍‌ଗ ଧାର
ଭାଂଗିଦିଅ ସେ ମେରୁଁ ମୁଣ୍ଡମସ୍ତୀ,
ଜାଳିଦିଅ ଶତ-ମୁଖୁର ଜଇ !
ଊର୍ଦ୍ଧ୍ୱେ ଉଠାଅ ବଜ୍ର-ମୁଠାର ବଜ୍ରପାଣି ।

। ୮ ।

ଆସ ଆସ ଆଜି ତନକୋଟି ଭୂକେ
ଓଠାର ଆଣିବା ମହିଷା ଜଭ,
ତାର 'ରାଜଧାନୀ' ହର୍ମ୍ମ୍ୟ-ତଟରେ
ଝୁଲାଇ ଦେବା ତା ଅବୟବ
ସଢ଼ି ଛୁଡ଼ୁଥିବ ମୃତ-ଗଣ୍ଡି ତା
ଉଚ୍ଚେ ଡାକିବା : ଆସ ଚଣ୍ଡିକା !
ପୁର ପଲ୍ଲୀରୁ 'ପାର୍ବତୀ', 'ଉମା', 'ଦୁର୍ଗା'-ନାମ୍ନି !!

ଦଶହରା
୧୯୪୮



# ଚୋଡ଼ାଇ ମାରନ୍ତୁ ଯାହାକୁ ଆମେ......

( କବି ପ୍ରାଣକୃଷ୍ଣ ସାମଲଙ୍କ ଅକାଳ ବିୟୋଗରେ )

"ଭବନ" ତଳରେ "ଶୋକ"ର ଦିବସ ପାଳୁଛ ଯିଏ
ତମେ ଦେଖିଥିବ, ଶୀର୍ଣ୍ଣ-ତନୁର ମୂର୍ତ୍ତି ଟିଏ ।
ତମେ ଶୁଣିଥିବ ! କେତେଥର ତାର ଚରଣ-ଚାଲି,
ଅସୀମ ପଥର ଯାତ୍ରୀ ଯେ ଅଜ ଯାଇଛୁ ଚାଲି ।

ବଣୁଆଁ କଣ୍ଟା-ବୁଦା ପରି ତାର ମୁଣ୍ଡ କେଶ
ଯେତେବେଳେ ଦେଖ ଶୋଭା ଓଠ ତଳେ ଲଖିଛୁ ହସ ।
ସମାଜ-ପଥର ପଙ୍କେ ଶୋଣିତ-ଢଳେଇ ଢାଳି,
କଲମ ଭିତରେ ଆଖିର ଲୁହରେ ଭରାଇ କାଳି ।

ଅତ୍ୟାଚାରର ନଥିରେ ନଥିରେ ଟାଣିଲି ଗାର,
ଅନ୍ୟକୁ ଦେଇ ଅଲୋକ—ଭୋଗିଲି ଅଂଧକାର ।
... ...

ଦିନେ ଦେଖା ହେଲା ରାସ୍ତାରେ ସେଇ ମୂର୍ତ୍ତିଟିର
"ଦେହ ଭଲ ଅଛୁ ?" ପଚାରିଲି ହୋଇ ନମସ୍କାର ।
ଉତ୍ତର ହେଲ, "ଜଳି ପୋଡ଼ି ମୋର ଯାଉ ଏ ଦେହ
ସତ ମୁଁ କହୁଚ, ଅଉ ଏ ଜୀବନେ ନାହିଁ ତ ମୋହ !"

ସେଦିନର କଥା ଆଜି ଏ "ଭବନେ" ପଡ଼ୁଚି ମନେ
ହଠାତ୍ କୁ ସତ.ହୋ 'ପରାଣ' ଲୁଚିଲା 'କୃଷ୍ଣ' ସନେ !
କିଏ କହେ ସିଏ ମୃତ୍ୟୁ-ପଥର ଯାତ୍ରୀ ହେଲା !
ମୁହିଁ କହେ ସିଏ ଭାଂଗି ଦେଇଚି ସମାଜ-କାରା ।

ଅସତ୍‌-ପଥରେ ବଜାଇ ବଜାଇ 'ସତ୍ୟ' ବୀଣା,
ନିଃଶେଷ କଲ ସମାଜ-ନାଗର ଗରଳ ମୁଣା।
ଚଲି ତ ଯାଇଚ ସମାଜ-ପତ୍ତ ହେ ! ଫେରିବ ନାହିଁ —
ତମ ସମାଜର ଜାଲରେ ଶୀକାର ହୋଇବା ପାଇଁ ।

ଯେଉଁ ସମାଜରେ କବିର ଜୀବନ ହୁଅଇ କଣା
'କଟିବା' ତାର ଯେଉଁ ସମାଜରେ 'ଦୁର୍ଘଟଣା' ।
ସେହି ସମାଜରେ ଏତେଦିନ ଧରି "କୃଷ୍ଣ-ପ୍ରାଣ,"
କମିତ କରିଲ କାବ୍ୟ-ବାଣର ବିଷ୍ଫାରଣ ?

ସେଇ କଥା ଆଜି ମନ ତଳେ ମୋର ଜାଗୁଛି ବାରେ
ଯିଏ ପଦାଘାତ ହାଣିଲ ସମାଜ-ସିଂହଦ୍ୱାରରେ ।
ଦୁଃଖ-ତଡ଼ାରେ ଜୀବନ ଦଳ-ଯା ଉଠିଲ ଫୁଟି
ଦୈନ୍ୟ-କେଦାରେ କାବ୍ୟର ବୀଜ ଦେଲ ଯେ ଗୁଣ୍ଠି ।

ବଞ୍ଚିଲାବେଳେ ଗୋଡ଼ାଇ ମାରିଲୁ ଯାହାକୁ ଆମେ
ମଲା ପରେ ଯାର "ଶୋକ ଦିନ" ପାଳୁଁ "ସ୍ମୃତି"ର ନାମେ,
ସେହି ଆତ୍ମାର ସଦ୍‌ଗତି ହେଉ—କାମନା ମୋର
ହେ ଜଗବନ୍ଧୁ ! ତମ ପାଶେ ଏଇ ମିନତି ମୋର ।

। କଟକ ।
୩୦ ଜାନୁଆରି, ୫୯



# ସଂଶୋଧନୀ

ବାସ୍ତବତାର କଠୋର ଅଘାତେ ଆଦମ ସ୍ୱପ୍ନପୁରୀ
ଏଇ ଦେଖ, ଦେଖ, ଭାଙ୍ଗି ପଡ଼ୁଛି ତାହ୍‌ର ପ୍ରାସାଦ ଦଶ !

ସ୍ୱପ୍ନକୁ ଯିଏ ଜୀବନ୍ତ କରିଛି, ସ୍ୱପ୍ନରେ ତାଜ୍ ଗଢ଼
ତମ କଳ୍ପନାବିଳାସର ଯିଏ ସମ୍ପଦ ଅତି ବଡ଼,

ଲଳିତ, କୋମଳ, ରୋମାଂଚକର ପ୍ରୀତିର ପ୍ରତୀକ ତମ
ଏଇ ପୃଥିବୀର ସୃଷ୍ଟିକାଳରୁ ଯାହା ଥିଲା ଅନୁପମ,

ଯାହା ଥିଲା ଚିର ଅମୃତମୟ, କାବ୍ୟର ଛନ୍ଦ
ଯାର ଗୁଣଗାନେ ମୁଖର ପୁରାଣ, ମହାକାବ୍ୟ ଓ ବେଦ,

ଆଦମକାଳରୁ ନାନାରୂପେ, ନାନାଭାବେ ଯେ ଦେଇଛି ଦେଖା,
ଆସ୍‌ମାନେ ଏଇ ଭ୍ରମମାନ ଶଶୀ, ଯାହା ଚିର ସୁଦୂରିକା,

ଜଡ଼ବାଦ ଆଉ ବିଜ୍ଞାନ ଆଜି ଅସଲ ଚେହେରା ତାର
ଖୋଲି ଧରିଅଛି ମଣିଷ ଆଗରେ, ହେ କବି ବିଚାର କର !

ଏ ଯେ ଜଳ ଜଳ ଆଲୋକରଶ୍ମି ସାମ୍ନାରେ ତବ ଥୁଆ
ଯାର ଗୁଣଗାଇ ଆଦମ କାଳରୁ ମଣିଷ ଭୁଲିଛି ଭୂଆଁ ।

ମଣିଷ ଆଗରେ ବିଜ୍ଞାନ କାଲି ଆଜି ଯେ ଅର୍ଜିପେଶ୍
ତାହାର ବାସ୍ତବତାରେ କଦାପି ସନ୍ଦେହ ନାହିଁ ଲେଶ୍ ।

ଚନ୍ଦ୍ରରେ ମୋଟେ ନାହିଁ ପ୍ରାଣସଙ୍କେତ,
ଚନ୍ଦ୍ର ଗୋଟାଏ ଜନହୀନ ଦେଶ, ଗହ୍ୱର, ପର୍ବତ ।

ନାହିଁ ଏତେଟିକେ କାହିଁ ରୋମାଂଚ, ଜୀବନ୍ତ ଏକ ମରୁ,
ବୀଭତ୍ସତା ତା ଦଶେ ନାହିଁ ବୋଲି ସୁନ୍ଦର ସିଏ ଦୂରୁଁ ।

ଅସ୍ୱୀକାରର ଉପାୟ ତ ନାହିଁ, ନତକର ନିଜ ମଥା
ଯେତେ ପୁରାତନ ଧର୍ମ-ଗ୍ରନ୍ଥ, ବେଦ ଆଉ ସଂହିତା,

ମହାକାବ୍ୟ ଓ ଏପିକ୍ ଭିତରୁ ଚନ୍ଦ୍ରର ଭୁଲ୍ ଛବି
ପୋଛିବାକୁ ଅଜି ଆଗେଇ ଆସରେ ବାସ୍ତବବାଦୀ କବି !

ବାସ୍ତବତାର ଆହ୍ୱାନ ଶୁଭେ ଏଇ ଶୁଣ ଘନ ଘନ
ମାନବ-ଚନ୍ଦ୍ରୁଁ ଚନ୍ଦ୍ର ଛବିକୁ କର ହେ ସଂଶୋଧନ !

ବରଂ କୁହ ହେ ସେକାଳୁଟି ପଟେ ଚନ୍ଦ୍ର ଝୁଲୁଛି ନଭେ,
ଭାରତର ମାନଚନ୍ଦ୍ର କି ଆଜି ମଣିଷର ମୁହେଁ ଶୋଭେ !

। କଟକ ।
୩ ଜୁଲାଇ, ୬୯ ୦୦

# ଦଅ ମୋତେ ନୂଆ-ଇଂଧନ

| ୧ |

ଚଲା ପଥ ମୋର ଦୁର୍ଗମ ଆଜି ବନ୍ଧୁ ହେ,
ତିମିର-ପଥର ପାଂଥ ମୁଁ,
ନିଷ୍ପେଷଣ ଓ ଶୋଷଣ, କଷଣ ବେଦୀ ତଳେ
ଆଗାମୀ ଯୁଗର ସନ୍ତ ମୁଁ ।

ଜୀବନ-ବେଳାରେ ଭାଂଗିଛି ସାଥୀ ଭେଳା ମୋର
ମାତାଲ ହୋଇଛି ପାରାବାର,
ଭବ ସନସନେ ଛୁଟିଛି ତୋଫାନ ଗଂଭୀରେ
ଶୁଭେ ରାବିର ହୁଙ୍କାର ।

ଭାଂଗିଛି ରଥ ତୁଟିଛି ରଜ୍ଜୁ ବାର ବାର
ଥରେ ଅଧେ ନୁହେଁ, କେତେବାର,
କୋଟି-ମରଣର ଗଢ଼ ଜୀର୍ଣ୍ଣ-ରଥ ଛୁଟିଛି ମୋ
କାଟି ଘନ-ଅମା-ଅଂଧାର ।

ଜନପଦ, ପୁର ରାଜଧାନୀ ରାଜ-ପଥଧାରେ,
ହେଲାବେଳେ ସାଥି ଆଖୁଁ ସାର,
କେତେ ଶତବାର ଶୁଣିଛି ମଣିଷ ବୁକୁ ତଳୁଁ —
ଦୈନ୍ୟ-ବୀଣାର ଝଙ୍କାର ।

ଆଜି ବି ଶୁଣୁଛି
ସେହି 'ଝଙ୍କାର' ବଧୂ ହେ,
ହୋଇନାହିଁ ତାର ଅବସାନ,
ନର-ରାବଣରେ
ଅଶୋକ କାନନ୍ ଆଜି ବି ହେ
ଶୁଭେ, ଦଶ-ସୀତା-କ୍ରନ୍ଦନ ।

ଭୁଲୁଛି ମଣିଷ-
ମରଣୋନ୍ମୁଖୀ — ପଢୁଆର,
"ରାମ" ନୁହେଁ, "ଟରା" ରାଇକରେ,
'ଚେଂଗିଜ୍' ପିଠେ
ଜୀବନ୍ୟାସର ଡିଂଡିମ
ବିଶ୍ୱ-ମାନବ-ମଡ଼ାପରେ ।

ଏକପାଖେ କେଉଁ
ବାତାୟନ ଭେଦି ଯାଏ ଶୁଣା—
ଆକାଶବାଣୀର ମୂର୍ଚ୍ଛନା,
ଅନ୍ୟ ପାଖରେ
ଝରେ ନାଗୁଣୀର ବିଷମୁଣା,
ଦଗେ ହସଖାଲି ଗଂଜଣା ।

ମାନବ ପିଠିରେ
ଦାନବ ବଜାଏ ତାଳେ ତାଳେ
'ଯୋଜନା'-ହତ୍ୟା-ଝଂକଣୀ,
ଜନନୀ, ଭଗିନୀ
ଛାତିପରେ ଚାଲେ ହରଦମ୍
ଯାତନାର ରେଲ ଇଂଜିନ ।

| ୨ |

ଭାଂଗିନ ମେରୁ
ଦୈନ୍ୟର ଶତ-କଷାଘାତେ;
ତୁଟିନି ମନରୁ ବିଶ୍ୱାସ
ହୋଇନି ଅବଶ,
ଯୁଗଳ ଚରଣ ବଧୂ ହେ,
ବୁକୁତଳେ-ଅଛି ନିଃଶ୍ୱାସ ।

ଜାଣିଛି ମୁଁ ହେବ
କେତେବାର କ୍ଷତ-ବିକ୍ଷତ;
ଜୀବନର ରଣ-ଭୂଇଁ ପରେ,
ତଥାପି କାଟିବି
ଦାନବ, ଦାନବୀ ନାଗଫାଶ
ଏଇ ମୋ ଶାଣିତ ଅସି ଧାରେ ।

ଆଶା ମୁଁ ରଖିଛି
ଭେଟିବ 'ନୂତନ' ସୀମାରେଖା,
ଫଟାଇ ଉଠିବ, ତରଣି ମୁଁ
ଧ୍ୱାଂତ-ଗଗନ
କରି ଆଲୋକିତ କରିବି ହେ
କୌରବ-ସ୍ନାନ-ଧରଣୀ ମୁଁ ।

ଏତେବେଳେ ତମେ
ବଂଧୁ ନ ହୁଅ ଅଥିରବ,
ତୁଟାଇ ଦିଅନା ବଂଧନ,
ବୁକୁତଳେ ମୋର
ଦଧିଚୀ-ଆତ୍ମ-ବିଶ୍ୱାସ,
ଭରିଦିଅ-ନୂଆ-ଇଂଧନ ।

କଟକ
୨୯ ଡିସେମ୍ବର, ୫୭



# ଅପେକ୍ଷା

॥ ୧ ॥

ମୁଁ ହେଲେ ରୁଦ୍ର, ତମେ ରୁଦ୍ରାଣୀ
ଅଥବା କାତ୍ୟାୟିନୀ—,
ହେବ ଖର୍ପର-ଭୁଜା,
ପଦପାତେ ରଚି ଭୀମ-ତାଂଡବ
ହେ ମୋର କୁଟୀର-ରାଣୀ !
ଅବା ହେବ ଦଶଭୁଜା !

ସୃଷ୍ଟିର ମୁହିଁ କଲ୍ୟାଣ ରୂପେ
କଂସ-ବନ୍ଦୀ-ଶାଳେ—
ଯେଦିନ ଜନ୍ମ ନେବି,
ତମେ ଜନ୍ମିବ 'ରାଧିକା' ନାମେ ଗୋ
ଠିକ୍ ସେତିକବେଳେ
ଆଂକ ମନେ ମୋ ଛବି ।

ତମେ ଯେବେ ହେବ୍ ଜନକ-ଦୁଲଣୀ
ରାବଣ ଅରିର 'ରାମ'
ହେବି ମୁଁ ବାଧ ହୋଇ,
ସାଗର-ବୁକୁରେ 'ସେତୁ' ବାନ୍ଧିବା
ହୋଇବ ମୋହର କାମ
ତମ 'ଉଦ୍ଧାର' ପାଇଁ ।

କୁରୁସଭା ତଳେ 'ପାଞ୍ଚାଳୀ' ଯେବେ
ହୋଇବ ଗୋ ପ୍ରିୟତମା !
ମୁଁ ହୋଇବ ପାର୍ଥିବ,
ଦେଖି ପାରିବନି ବସନ-ରୂପ
ଉମର ଗୋ ମନୋରମା
ଛଟାଇବ 'ଫାଣ୍ଟିବ' ।

ମୋ ତନୁର ତମେ ଅର୍ଦ୍ଧେକ କିନା
ତମ ତନୁରେ ମୁଁ ତାହା
ତଫାତ୍ ପ୍ରଶ୍ନ କାହିଁ ?
ସୂର୍ଯ୍ୟ ବନ୍ଧୁନେ ଅଚଳ ଯେପରି
ଏଇ ପୃଥିବୀର ନାଆ
ଆମେ ସେହିପରି, ସହି !

॥ ୨ ॥

ଆସ, ଭୁଲିଆସ ମନ୍ଦର-ନନ୍ଦନା
ଦୁହେଁ ଚରଣ ଭୁଲି
ଗାଢ଼ତର ହୁଏ ରାତି,
ଉଠିବନି ଏବେ ପ୍ରାଚୀ ନଭ ଶିଖେ
ଉଷାର ଅଂଶୁମାଳୀ
ଲାଗିଆସ ମୋର କତି !

ଜାଣେନା ? ଦହାନୁଭୂତ, ପ୍ରେମ, ସଖୀ
ହଜାଛୁ ପଶୁତା-ତଳେ
କହିବା ଦୁଃଖ କାରେ ?
କହିଲେ କିଏ ବା କାହାଁକୁ ଶୁଣିବ
ଆମର କଥାକୁ ଭଲେ
ଏ ଘନ-ଅନ୍ଧକାରେ ?

କେତେ ମଥାପରେ, ଝୁଲେ ପ୍ରଶ୍ନଭରେ
ଖୁଣୀର ଶାଣିତ କାତି
ଝଡ଼ ଉଠେ ଫୁଲ ଫୁଲ,
ନମ୍ର-ଲପନ, କମ୍ର ଓଠରେ
ମୃତ୍ୟୁର ନୀଳ ରାତି
ଜମି ହସେ ଖିଲ୍‌ଖିଲ୍ ।

କେତେ ଯୁବକର 'ମୁ' ହଜିଯାଏ
ଯୁବତୀର ନଭେ 'ବଢ',
ଫୁଟେ ନାହିଁ ଯଉବନ,
କେତେ ବାଳିକାର କଳିକାକୁ ଲୁଟି
କୁଳଟା ବୋଲାଏ 'ସତୀ'
ରଚେ ନୂଆ ମଧୁବନ ।

କେତେ ମଧୁବାସେ ଅଶ୍ରୁ-ଅସରା
ମେଘ କାଟିଦେଇ ଯାଏ
'ପ୍ରିୟ' ଗୁଡ଼ିଯାଏ 'ପ୍ରିୟା'
ଅଂଗୁଳିଶାଳେ କେତେ 'ଜନନୀ'ର
ଗଣ୍ଡ ଭିଜଇ ଲୁହେ
ଗୁପ୍ତ ତଳେ କଳେ-କାଆଁ !

ଏଇ ଦୂର୍ଦ୍ଦିନ ବାଟରେ ଆମେ ଗୋ
ଦୁଇଟି ବାଟୋଇ, ସଖି !
ବାଟ ବଡ଼ ଦୁରୁଗମ;
ବାର ବାର କାହିଁ ପଶ୍ଚର ସଜନୀ
"ରାତି ପାନ୍ଥବନିକ ?"
ମାତ୍ର ଦ୍ୱିତୀୟ ଯାମ !

ପାହିବ ଏ ରାତ, ହୋଇବ ପ୍ରଭାତ
ସୂର୍ଯ୍ୟ ଉଠିବ ଦୂରେ
ପ୍ରାଣ-ପ୍ରାନ୍ତର ତଳେ,
ନବୀନ ଉଷାର ତୂର୍ଯ୍ୟ ବାଜିବ
କୋଟି ହୃଦ-ମନ୍ଦିରେ
ଜୀବନର ସୁରେ ସୁରେ ।

ଏ ସମୟେ ତମ ଗର୍ଭବେଦନା
କାହିଁକି ଗୋ ହେଲା ସୁରୁ ?
ସହଧର୍ମିଣୀ, କହ,
'ମଣିଷ'ର ଏଠି ଦେଖାନାହିଁ ସଖୀ
ଖାଲି ତ ଗୋରୁମାରୁ
ଦଳର ଛୁଟିଛି ସୁଅ ।

ଯେଉଁଠି ପ୍ରିୟା ଗୋ ଶିଶୁ-ଦପେଟିର
ନାଡ ଚ୍ଛଲେ ବନ୍ଦୋବସ୍ତ
ସେଠି ତୋ କୋଳରେ ଛୁଆ,
ବଂଚିବ ନାହିଁ, ଜନ୍ମ ନ ଦିଅ
ଜୀବନ ଲାଗିବ ବାଜି
ବୁଡ଼ିବ ତା ପ୍ରାଣ-ନାଆ ।

ହେ ମୋର ପରାଣ-ନୀଡ଼ର କପୋତୀ
ଶାନ୍ତିର ପରିଚୟ
ପକ୍ଷ ଉଷୁମ ତୋର,
ଜାଣୁଚି ମୁଁ ସଖି, ଗର୍ଭ-ବେଦନା
ହୋଇବଣି ଅବଶ୍ୟ
ଟିକିଏ ଧୈର୍ଯ୍ୟଧର !

। କଟକ ।
ଜୁଲାଇ, ୫୯
॥ ରାତ ୨ ଟା ॥



# ସହଯାତ୍ରା

। ଏକ ।

ମୋର ଜୀବନ-ପଥରେ ପ୍ରିଏ ଗୋ କୁସୁମ-ହାସିନୀ
ତମେ ଅଭିସାରିକା ଗୋ, ଆସୁଥିଲ ଗୁଳି ଚରଣ,
ପଥେ ଛପିଗଲ କାହିଁ ମଦିର-ନୟନା ସହାରେ ?
ଅଳସ-ଚରଣା, ହେ ମୋର ଦୀର୍ଘକେଶିନୀ !

ଆସି ଦେଖିଯାଅ ଥରେ ତନ୍ୱୀ !
ମୋର ପଥେ ପଥେ ଜଳେ ବହ୍ନି
ସମ୍ମୁଖେ ମୋର ମରଣ କୁହାଟ ମାରୁଛି;
ମୁଁ ତ ଧ୍ୱାନ୍ତ ପଥର ଯାତ୍ରୀ
ଆଗେ ଚନ୍ଦ୍ର-ବିହୀନ ରାତ୍ରି
ତଳେ ତଳେ ଦେଖି, ନିଜ ଆଗେ ନିଜେ ସରୁଛି ।

। ଦୁଇ ।

ସଖି ଯେ ଦିନ ଛୁଇଁଲି ଧୂଳିର ଧୂସର-ଧରଣୀ
ସେହି ଦିନରୁ ଆସିଲା ଜୀବନ-ସମରୁ ଡାକରା
ପଛେ ରହିଲା ଜୀବନ, ଆଗରେ ମୁକ୍ତି-ସଡ଼କ
ଥିଲା ଦିନୁ ମୁଁ ଶିଖିଲି ଅସ୍ତ୍ର ଚାଳନା ସଜନୀ···
କାଟିବା ପାଇଁକି ଦୁଃଖର ଘନ ରଜନୀ ।

ପଥ		ପଦେ ପଦେ ପ୍ରତିବନ୍ଧକ, ବାଧା ପାଉଛି
ଥରେ		ଅନ୍ଧ ନୂହେଁ ନେତ୍ରେ କଂସ-କଚଡ଼ା ଖାଉଛି
ଖୋଲ		ନିର୍ଯ୍ୟାତନାର ନିଆଁରେ ନିଜକୁ ଦହୁଛି ।
ଅପରାଧ ମୋର ଲୁଚାଇ ମୁଁ ଦେଲି ମୁହାଁସ:
ସେପାଇଁ କୁଆଡ଼େ ଜୀବନେ ଘୋଟିଲା
ଦୈନ୍ୟର ଘନ ଉଆଁସ !

କହି ବସିଲେ ତ କଥା ସରିବନି ସହଜରେ,
ଲେଖି ବସିଲେ ତ ଅଣ୍ଟିବ ନାହିଁ ସ୍ୟାହିରେ !
କେଜାଣି କାହିଁକି ମନ-ମୁକୁରେ ମୋ ଦିଶିଗଲା ତୋର ଲପନ···
ଆଗେ ନାଚିଗଲା ତୋର ତନୁ-ଲତା ଛାଇରେ···
ଯେ ପାଇଁ ଆଜି ଏ କବିତା ସୃଷ୍ଟି ସହଜରେ !

। ତିନି ।

ଆଜି		ଶୁଣାଅଁ ତୁମର କର-କଂକଣ ବୀଣା-ତନ୍ତ୍ରୀର ସୁର ଗୋ,
ତା'ର		ରୁଣୁଝୁଣୁ ତାନେ ଝଂକୃତ କରି
ଏ ମୋର ଜୀବନ-ପୁର ଗୋ !
ଆସ,		ଅଳସ ଚରଣେ ତେଜି "ଅଭିଜାତ" ଦେହଳି···
ଭୂରୁ-ଖଡ଼ଗରେ ଛେଦି ଲଜ୍ଜାର କୁହେଳି,
ପୃଷ୍ଠେ ଝୁଲାଇ କୃଷ୍ଣ କେଶର ବେଣୀ ଗୋ···
ଆସ,		ସର୍ବହରାର କୁଟୀରେ କୁଟୀର-ରାଣୀ ଗୋ !

। ଚାରି ।

ହାତେ		ଛନ୍ଦ ହାତକୁ ଗାଇବା ମନ୍ତ୍ରେ ଗୀତରେ,
ଆମେ		ଗଢ଼ିବା ଶୋଷଣ ବିହୀନ ସମାଜ ପଥରେ
ଯେବେ		ପ୍ରାଚୀ-ନଭ ତଳେ ଉଠିବ ଅଂଶୁମାଳୀରେ···
ଦିଗ୍‌ବଳୟରେ ତୋହର ଲୋହିତ ଚରଣ-
ଅଳତା ବୋଳିରେ,

ନୂଆ ମଣିଷର
ନୂଆ ଜୀବନର କ୍ଷେତରେ,
ଯେବେ ଅକଳନ ଦାହ ଉଠିବ
ଅଦ୍ଭୁତ କୃଷାଣ ହାତରେ,
ଶୁଷ୍କ ପାଦପେ ଦେଖା ଦେବ ନବ-ପତ୍ର ପୁଷ୍ପ
ମଳୟ ପବନ ପାଇରେ,
ଲକ୍ଷ କାସ୍ତର ପାରେଶ ଧାରରେ ଶୋଇବ,
ବକ୍ଷରେ ତାର ନୂତନ ଫସଲ ନଇଁବ,
ବରଷଣୀ-ଚଳଚଞ୍ଚୁ ଉଠିବ ମିଳନ ଗୀତିକା ଗାଇରେ !

। ପାଞ୍ଚ ।

ଆଜି ଏତେବେଳେ ବାନ୍ଧବୀ ମୋର
ଦୁର୍ଯୋଧନର
ଶାସନ-ବ୍ୟୂହର
ଘାଟି ଦୁର୍ବଳ—
ଆନେ ଦେଇ ଭୀମ ଆଘାତ;
(ଆସ) ସଜାଇ ଦେବା ଗୋ ଦଳିତ-ମଥିତ, ପୀଡ଼ିତ ଜନର
ବିପୁଳ ସୈନ୍ୟବାହିନୀ,
(ଆମେ) ଅଗ୍ରିଛ ଗୃଳିବା ଆକାଶ ।
ଆସୁ କେ ରୋଧିବ
ଆମର ଜାତିର
ଆମର ଜାତିର ବିକାଶ···
ଆମେ ମାନିବା ନ କିଛି ଆଇନ ।।

'ରଙ୍ଗ-ଭବନ' (କଟକ
୧୦ ମଇ, ୫୧

❊

# ଦେଶଟା ଯାଉଛି କାହିଁରେ ?

(୧)

ଜୀବନଟା ଖାଲି ଶୁଖା ଖଡଖଡ଼ ହୋଇରେ
ଅଟଇ 'ଦଟଲଇ ଘାଇ'ରେ,
ଜୀବନ ସାଥିରେ 'ଚୁକ୍ତି' କରିବ କାହିଁରେ ?
କଲମରେ କାଳି ନାହିଁରେ !

କ୍ଷେତ ଉଜାଡ଼ିଲେ ମଣିଷ ରୂପକ ଗାଈରେ
'ଜାପାନୀ ମେଥଡ୍' କହିରେ,
ଫସଲ ସବୁ ତ ଗଲଣି ମରୁଡ଼ି, ଧୋଇରେ
ଉଠୁଛି ଶୁଆସ, ଧଇଁରେ ।

ଭୋଟ ବେଳକୁ 'ନାଗରିକ' ଅଟେ ମୁହିଁରେ
'ସଂବିଧାନ'ର ବହିରେ,
ଭୋଟ ସରିଲେ 'ଅଧିକାର' ମୋର ନାହିଁରେ
ଘୃତ ଢଳେ ଜଳେ ଜୁଇରେ ।

(୨)

ଶାନ୍ତ ଶୀତଳ ସମୀର ଆସଇ ବହିରେ
ସଂଧ୍ୟା ପଡ଼ଇ ନଇଁରେ
ବତୀଖୁଣ୍ଟରେ ଲାଇଟ୍ ଦେଲାଣି ଗୃହିଁରେ
ରାତି ଆସୁଛି ଧାଇଁରେ ।

ଅଟ୍ଟାଳିକାରୁ ରେଡ଼ିଓ ମାରଇ ହାଇରେ
ବାତାୟନ ପଥ ଦେଇରେ,
ପାରଦ ଆଲୁଅ ଝଲେ ଝଲେ ଯାଏ ବହିରେ
'ଚମ୍ପୁ', 'ଓଡ଼ଣୀ' ନଈରେ,

"କିଏ ସେ ଯାଉଚ ? ପଇସାଟେ ଦିଅ ଖାଇରେ
କାଲିଠୋଉଁ ଖାଇ ନାହିଁରେ"
ଅନ୍ଧ ଡାକଇ ସଡ଼କ ଦାଢ଼ରେ ଶୋଇରେ
ଜଣେ କେହି ଶୁଣୁ ନାହିଁରେ !

ବେକାର ଫେରୁଛୁ ଚୁଣ୍ଡା-ଚପଲ ବହିରେ
ବରା, ଗୁଲ୍‌ଗୁଲା ଖାଇରେ,
ବରଷେ ହେଲଣି ବୁଲୁଚି ଚାକିରି ପାଇଁରେ
ତେବେତ ମିଳିଲା ନାହିଁରେ !

ପ୍ରେସ୍‌ରୁ ଫେରେ କଂପୋଜିଟର 'ଜଇ'ରେ,
ଶୁଖିଲା-ମୁହଁକୁ ନେଇରେ—
ଛଅମାସ ହେଲା ଦରମା ତ ମିଳିନାହିଁରେ
ନାବ ତା' ଚଳିବ କାହିଁରେ ?

ଭିକାରୁଣୀ ବୁଲେ ଦୁଆର ଦୁଆର, ସାଇରେ
ଗୁଣ୍ଡିଲ ମୁଠାଏ ପାଇଁରେ,
ଶୁଖୁଟା ଛୁଆଟା ବକ୍ଷ ତା ଦିଏ ଦୁହିଁରେ
ରକତକୁ ଯାଏ ପିଇରେ ।

ବଜାରୀ ଟୋକାଟେ ଦାନ୍ତ ନିକୁଟେ ଛଇରେ
(ତାକୁ) ଗୋପନ ଇଶାରା ଦେଇରେ
'ପ୍ରତିଦାନ' ବିନା 'ଦାନ' ଆଉ ମିଳୁ ନାହିଁରେ ?
ଦେଶଟା ଯାଉଛୁ କାହିଁରେ ?

ଲୁଗା ଦୋକାନର ମୂକ ଦୋକାନୀ ଖାଇରେ
ଚହିଅଛୁ ପଥ ଗୁହାଁରେ,
"ମନ୍ଦ-ଗମନା, ନନ୍ଦ-ଗଡ଼ରେ ଆଜି କି ଆସିବେ ନାହିଁରେ
ଝୁଟ୍‌-ଝକମକ ବସ୍ତ୍ରରେ ।"

"ବ୍ଲାଉଜ, ବ୍ରେଷ୍ଟ୍, ଟାଇଟ୍ ଅଛି କି ?" ପଚାରିଲେ –
ପର୍ବଶେଷେ ଆସି ଝୁଲଇଲେ,
ଡେସ୍କ ଉପରେ ଭ୍ୟାନିଟି ବ୍ୟାଗ୍‌କୁ ଥୋଇରେ
ବସ୍ତ୍ର କିଣିବେ ନାହିଁରେ ।

ମନ-ବଜାରରେ ପଡ଼ିଛି ହାଇଟାଇଟରେ
ହୃଦୟ ଦୋଳଇ ଦନ୍ଦରେ,
ଘନ-ଜଘନାର ବଙ୍କା-ଭ୍ରୂଲତା ଚାହିଁଲେ
ଝଡ଼ ଉଠେ ମନ ଦେହରେ ।

(୩)

କେଉଁ ପାତାଳକୁ ଯାଉଛ ଆଜି ଏ ମଧ୍ୟରେ ?
କିଛି ବୁଝାପଡ଼ୁ ନାହିଁରେ,
'କବି' ହେବାପାଇଁ ଧରିଲି କଲମ ସଙ୍ଗରେ
ଲେଖିବାକୁ ନାହିଁ ସ୍ୟାହିରେ ।

ଗାଡ଼ିବାନଟା ଖାଲି ଝୁଲୁଛି ଶଗଡ଼-ପଛରେ
କେଏଁ, କେଏଁ ରବ ଦେଇରେ,
ଦର୍ପ-ବଳଦ ହୋଇଲେଣି ଧଇଁ ସଇଁ ରେ
ଖରା ମାରେ ଝାଇଁ ଝାଇଁ ରେ ।

କେତେ ମୂକଙ୍କର ଯଉବନ ଫୁଟେ ନାହିଁରେ
ଅନ୍ନ ମୁଠିଏ ପାଇଁରେ,
କେତେ କୁଡ଼ିଆରେ ମୃତ୍ୟୁ ମାରୁଛି ହାଇରେ
ହକ୍‌କା ଉଠୁଛି ରକ୍ତରେ ।

କାରଖାନା ପରେ ଚିମ୍ନି ମାରିଲ ହାଇରେ
ମଜଦୁର ରହେ ଶୋଷିରେ,
କାଲି ବାରଟାରେ କହୁଚି ମାଲିକ ଖୁଇରେ
'ବୋନସ୍' ମିଳିବ ନାହିଁରେ ।

''ସ୍ୱପ୍ନଙ୍କ'' ସବୁ ''ଆଶ୍ରମେ'' ବସି ଚନ୍ଦରେ
"...ଶୋଷକ'' ଲେଖିଲେ ଛନ୍ଦରେ,
ଶ୍ରୀଗ୍ରୁମୁଗ୍ରୁମୁଆଁ, 'ହଜୁର'ଙ୍କ ମନ ମୋହରେ
ନିଜକୁ ବିକିଲେ ସେଥିରେ ।

"ଯୋଜନା'' ଉପରେ କବିତା ଲେଖିଲେ ଯାଇରେ
"କବି'' ବୋଲାଇବ ମୁହିଁରେ,
କାଲ୍‌ପନିକର କଲମ ଡାକୁଚି ଚହରେ
ବାସ୍ତବତାକୁ ଫେଇରେ ।

ଯେଉଁ 'କବିତା'କୁ କେହୁ ବୁଝୁ ଥିବେ ନାହିଁରେ
ଛନ୍ଦ ନଥିବ ତହିଁରେ,
ସେମିତ 'କବିତା' କାହିଁକି ଲେଖିବ ସହିରେ ?
କଲମ କରୁଚି "ନାହିଁ''ରେ ।

ଶସ୍ତା-ନଭେଲ୍ ପ୍ରେମ-କଂପନ ଦେଇରେ
ଲେଖିଯାଅ ଖାଲି 'ବନ୍ଧୁ'ରେ,
ଦର-ମୁକୁଳିତ ଯୁଗଳ-କୁଚକୁ ଗୁନ୍ଥିରେ
କହେ 'ପ୍ରକାଶକ' ଖୁଇରେ ।

|| ୪ ||

"ଠନ୍, ଠନ୍, ଠନ୍'' ଘଣ୍ଟା ବାଜିଲା ହେଇରେ
"ଅଧରାତ୍ର'' ସ୍ୱାକୁ କହରେ,
ମଫସଲେ କାର ଚୁଲ୍ଲୀ ଜଳିଥିବ ନାହିଁରେ
ଗାଆଁ ପଡ଼ିବଣି ଶୋଇରେ !

ଚନ୍ଦ୍ରବଦନା ଆଉ ମଠଙ୍କର ନାଇଁରେ
ଯେତେ ପାଦେଅ ଯାଇରେ,
ଚନ୍ଦ୍ରା ଆହିଲ ମଦର ନମୁନା ସହାରେ
କଲମ ତ ଗୃଲ୍ ନାଇଁରେ !

"ସ୍ୱାଧୀନ ଦେଶ"ର ସ୍ୱପ୍ନ ତ ଗଲା କାହିଁରେ ?
କହ୍ନ ପାରବ କି ସହାରେ ?
ପାନଖିଲେ ଦଅ 'ନେହେରୁ ପଢ'ରୁ ଦେଇରେ
ଅଲପ ଚୂନ ଓ ଖଇରେ !

। କଟକ ।
(ବିଷୁବ ସଂକ୍ରାନ୍ତି)
୧୯୫୮



# ଜୀବନ-ଛତରୁ ନିଆଁ ନିଭିଲାଣି

॥ ୧ ॥

ଜୀବନ-ଛତାରୁ ଝାଡ଼ି ଭାଜିଗଲା, ଗ୍ରୀଷ୍ମକାଳେ
ବାରଟା ବେଳେ,
ଚୁଇଁ ଚୁଇଁ ଖାଲି ରୌଦ୍ରମାରେ
ଯାତାପଥରେ ବନ୍ଧୁ ଜଳେ ।

ଜୀବନ-ବାଡ଼ରୁ ବତା ଖସିଗଲା, ପଶିଲେ ଗୋରୁ
ଗୋଠମାରୁ,
ଛଣ ଉଡ଼ିଗଲେ ଜୀବନ-ଘରୁ
ବର୍ଷତ ମୁହଁ ବର୍ଷବାକୁ ।

ଜୀବନ-ଡିଙ୍ଗାରୁ ଗୋଡ଼ ଖସିଗଲା, ହୋଇଲା ଗ୍ରେଟା
କି ଦୁଟଦଶା !
ଫୁଟି ତ ଗଲାଣି ଜୀବନ-ନୋଟା
ପାଣି ଟୋପେ ପାଇଁ ତଣ୍ଟି ଅଠା !

ଜୀବନର କୁଞ୍ଜ ପର୍ଯ୍ୟନ୍ତର ମାର ଶେଷକୁ ମନ
ଦେଖିବ ଭଲ ?
ଏଇ ଯେ ଦିଶୁଛି ଧର୍ମଶାଳା
ସାମ୍ନାରେ ତାର ଜୀବନ ଚଲ ।

ଜୀବନ-ପାଟରେ କୋଳଥିଆନାଗ ଟେକିଚି ଫଣା
ଅନା ଗୋ ଅନା,
ଲହ ଲହ ଜିଭ କରୁଚି ସିନା
'ଜିଭ' ନୁହେଁ ସେହୁ ମୃତ୍ୟୁ-ବାନା ।

ଜୀବନ-କଜଳପାତି ଉଡ଼ିଗଲା, ଫୁର୍‌ର୍‌ କିନ—
ଦେଖି ପାରନ,
କହିଲା ନାହାକ, "ପଡ଼ିଚି ଶନି"
ଶୁଣିଲି ମୁଁ ଖାଲି ଭକୁଆ ବନି ।

ଜୀବନ-ଭଣ୍ଡାରୁ ପାରିଦଳ ଏବେ ଗଲେଣି ଉଡ଼ି—
ପକ୍ଷ ଝାଡ଼ି,
ଆମେ ଝିବା ଗୃଲ ସେମିତି ଉଡ଼ି
ମୁକ୍ତାକାଶରେ ଯେମିତି ଗୁଡ଼ି ।

ଜୀବନ-ବାଡ଼ିରୁ କଅାଁ ନିଭିଲାଣି ଏଇ ଗୋ ଏଇ,
ପରାଣ ସଖି,
ଏ ଦେଶରେ ଆଉ କଅାଁ ତ ନାହିଁ
ଅଂଧାର ଖାଲି ମାରୁଚି ହାଇ ।

॥ ୨ ॥

ଚାଲିଯିବା ସେଇ ଅଂଧାରେ — ଆସ ବାନ୍ଧି ଜାଲି
ଚରଣ ଶୃଙ୍ଖଳ,
ହବ ନାହିଁ ଏଠି ଜୀବନ ଧର
"ଗରବ ମାଇପ ସବୁର ଶାଳୀ ।"

ସରଣୀରେ ଆସ ଆଲ୍‌ପିନ୍‌ ଖାଲି ହେଲେ ବ ପୋଡା
ଯିବାର କଥା,
ଚରଣରେ ଠେଲି ମରଣ-ଚିତା
ଶୁଣି ଶୁଣି ଖାଲି ମୃତ୍ୟୁ-ଗାଥା ।

ଦୁଃସହ ଖାଲି ଜୀବନଟା ଏଠି— ଦୁର୍ବିସହ
ଉଠୁଚି କୋହ,
ତୁଟି ତୁଟି ଯାଏ ଜୀବନ-ମୋହ
ଆଖି ତଳୁ ଝରେ ତପ୍ତ-ଲୁହ ।

ଏଇ ରାଇଜକୁ ଟପିଲେ ଭେଟିବା ନୂତନ ଦେଶ —
ଶୋଷଣ ଶେଷ,
ଭାଇ ଦେଉନାହିଁ ଭାଇରେ ଦ୍ୱେଷ —
ସେଇଠି ରଚିବା ଜୀବନ-ରାସ ।

ଚରଣ-ଚିହ୍ନ ଛାଡ଼ିଦିବା ଏଇ ସମାଜ ତଳେ—
ଯାହା କାଲେ,
ବନ, ଗିରି ଆଉ ତଟିନୀ ତୀରେ—
ଗ୍ରାମ, ଜନପଦ, ନଗ୍ର କୋଳେ ।

ପଶ୍ଚାତେ ଆମ ଯାତ୍ରୀ ଯେ ଜନେ ଆସିବେ ଚାଲି —
ଦେଖିବେ ଖାଲି,
"କିଏ ସେ ଏପଥେ ଯାଇଛନ୍ତି ଚାଲି
ଅସନ୍ତୋଷର ବହ୍ନି ଜାଳି ?"

ସଙ୍କଳ୍ପର ମାନସୀ ଗୋ ମୋର ନକର ଡେରି
ଆସ ଗୋ ଚାଲି ।
ବନ୍ଧୁର ପଥ, କାନନ, ଗିରି —
ଘନ-ତମସାର ବକ୍ଷଚିରି ।

ଆଉଟିକେ ପରେ ଦେଖି ତ ପାରିବା ପୂର୍ବାକାଶେ —,
ରକ୍ତ-ରେଖେ
ଦିଗ୍‌ବଳୟରେ ସୂର୍ଯ୍ୟ ହସେ
ରାତ୍ରି ପାହିବ ଯାତ୍ରା ଶେଷେ ।

। କଟକ ।
୩ ମାର୍ଚ୍ଚ, ୫୮

# କାଲି ଓ ଆଜି

ତମେ ଯେଉଁମାନେ କାଲି କରୁଥିଲ ମୋହର ନାନ୍ଦୀପାଠ
ମୋର ଗୁଣଗାନେ କଂପାଉଥିଲ ଓଡ଼ିଶାର ବାଣୀପୀଠ,
ମୋର ମୁଦ୍ରିତ ଗ୍ରନ୍ଥ-କଡାବେ 'ଭୂମିକା' ଲେଖିବା ଛଳେ
ଯିଏ କାଲି ମୋର ଗାଉଥିଲ ଗୁଣ କାଳି ଆଉ କଲମରେ ।—
ମୁଁ କୁଆଡ଼େ ଏଇ ଦୀନ-ଓଡ଼ିଶାର ଜନତାର ଗୀତିକାର !
ଲିଖିତ ଭାବରେ ତମେ ଯିଏ ମୋତେ କରିଥିଲ ସ୍ୱୀକାର,
ଆଜି ମୁଁ ବୁଝୁଛି, ତମ ସ୍ୱୀକୃତ, ଅଭିନନ୍ଦନ ଯାହା,
ନଥିଲା ସେଥିରେ ଆନ୍ତରିକତା, ଛଳନା କେବଳ ତାହା ।

ଏ ମୋର ଶାଣିତ ନଇତିକତାର ଖଡ଼୍‌ଗାଘାତର ଭୀତ—
ତମର ମୁହଁରେ ଫୁଟାଇଥିଲା ମୋ ପ୍ରତିଭାର ଜୟଗୀତ ।
ନିଜକୁ ଉଚ୍ଚ-ଆସନେ ବସାଇ ଯେତେ 'ପଣ୍ଡିତ' ଦଳ
ଭାଷା-ସାହିତ୍ୟ ବକ୍ଷ-କଷି ତମେ ଉଦର ଯେ ଭରୁଥିଲ
ଦେବୀ ଭାରତୀକୁ ଭୁଲେ କେବେ ଧନେ ଆରତୀ କି ଅଛୁ କର ?
କେତେ ଅସଂଖ୍ୟ ସୂର୍ଯ୍ୟୋଦୟର ତମେ ତ ହତ୍ୟାକାରୀ !
ଖୋଲିଦିବା ଭୟେ ଦେହରୁ ତମର ଶଠତାର ମହାବର୍ମ,
କାଳେ ତମ ପଦମର୍ଯ୍ୟାଦା, ପାପ, ଯାହା ଯାହା ଅପକର୍ମ ।
ନିଜକୁ ରଖିବା ପାଇଁ ନିରାପଦ, ରଚି ମୋର ସ୍ୱାଗତିକା
ମୋ ଗତିପଥର ଦୁଇପାଶରେ ତମେ ଦେଇଥିବ ଆସି ଦେଖା ।

ଜୀବନ୍ତ ମୋର ଝଡ଼-ଗତପଥେ ତମେ ସବୁ ଯେତେବେଳେ,
ହୋଇଲ ଆହତ, ଖାଇଲ ପାହାର, ଠିକ୍ ଭାଇ ସେତେବେଳେ
ଠେକ ଧରିଛ ମୋ ନିଂଦା-ନିଶାଣ, ହସିବାକୁ ହୁଏ ମନ
ସୁବିଧାବାଦର ତମର ଏ ଯେଉଁ ଘୃଣିତ ବୃନ୍ଦାବନ—
ବଡ଼ ଅସହାୟ, ତମେ ନିରୁପାୟ, କରୁଣା ଜାଗଇ ମନେ,
ଏ·ମୋ ବିପନ୍ନ ଭାଷା-ସାହିତ୍ୟ ବିଦ୍ରୋହ ଆଣେ ମନେ ।

ଚିର ବିଦ୍ରୋହୀ-ତାରୁଣ୍ୟ ମୋର ଏଇକଥା ଆଜି କୁହେ—
ତମକୁ ବିଦାୟ ନେବାପାଇଁ ହେବ, ସସମ୍ମାନରେ ନୁହେ ।
ସବୁ କଥା ଛାଡ଼ି ପଛକୁ ରଖି ମୁଁ ପଚାରଇ ପଦେ କଥା
ନୈତିକତାର ହୃଦେ କେତେଦିନ ସୁବିଧାବାଦର ବ୍ୟଥା ?
କାଲି ମୁହିଁ ଥିଲି "ପୂଜ୍ୟ ତରୁଣ", "ସକାଳର ଅରୁଣିମା"
ଆଜି ପୁଣି ହେଲି କପଟ "ଲୋଫର୍" ? ବୁଝିତ ପାରୁନି ଜମା !

| କଟକ |
୧୭ ଡିସେମ୍ବର, ୬୮

★ ★ ★

# ତେଲ

ଘୃତଅପେକ୍ଷେ ତେଲ, ହାତ ମୁଣ୍ଡ ଗୋଡ଼,
ଶରୀରକେ ଅନେଶ୍ୱର
ମଣିଷଟା ଅଙ୍ଗ ପରସ୍ପରର
ସଦା ମର୍ଦ୍ଦନରତ ।
ଜନମତ ଠାରୁ ସମାଜ-ଜୀବନ
ଚାଞ୍ଚଲ୍ୟ ଯାଏଁ
ଦେଖେନ୍ କେମ ତେଲ କାରବାର
ଚାଲିଛି ବେପର୍ବାଏ ।
କବି ଦିଏ ତେଲ ସମାଲୋଚକଙ୍କୁ
ମନ୍ତ୍ରୀଙ୍କୁ ଅଫିସର,
ଅଧ୍ୟାପକଙ୍କୁ ଛାତ୍ର ତେଲାଏ
ନାରୀଙ୍କୁ ତେଲାଏ ନର ।
ଲେଖକ ତେଲାଏ ଯାଇ ପ୍ରକାଶକେ
ପୁସ୍ତକ ଛପନ,
ଗୁରୁଙ୍କୁ ତେଲାଏ ଶିଷ୍ୟ ବାପୁଡ଼ା
ଦେଇ ମନ-ଚଇତନ ।
ନେତାଙ୍କୁ ତେଲାଏ କର୍ମୀର ଦଳ
ସମାଜଟା ତୈଳାକ୍ତ
ତେଲ ନ ଢାଳିଲେ ମରିବାକୁ ହେବ
ଟଳେ ଢଳେ ଛାଳି ଚକ୍ର ।
ତେଲ କାରବାରେ ଝୁସି ସମସ୍ତେ
ତେଲ ବିନା କିଛି ନାହିଁ,
'ତେଲଦିଆ ସ୍କୁଲ୍' ଛାତ୍ର ନହେଲେ
ଉଠିତ ପାରିବ ନାହିଁ ।

। କଟକ ।
୧୭, ସେପ୍ଟେମ୍ବର, ୭୦
ମଧ୍ୟରାତ୍ରି

*
*   *
*

ପୃଷ୍ଠ



ଘଥ





## ॥ ଶୁଭେଚ୍ଛା ॥

ପ୍ରିୟ ରବିବାବୁ !

ଆପଣଙ୍କ ସହିତ ମୋର ବନ୍ଧୁତ୍ୱ ସ୍ଥାପିତ ହେବାର ଏଇ ମାତ୍ର ଅଳ୍ପଦିନ ହେଲା ! ଯେଉଁ ଭୌତିକ ଦାନ ଏବଂ ପ୍ରତିଦାନକୁ ଭିତ୍ତି କରି ଏ ବ୍ୟକ୍ତିସର୍ବସ୍ୱ, ସ୍ୱାର୍ଥାନ୍ଧ ସମାଜରେ ବନ୍ଧୁତ୍ୱର ସୃଷ୍ଟି ଏବଂ ବିକାଶ, ସେହିଭଳି କୌଣସି ଦାନ କିମ୍ବା ପ୍ରତିଦାନ ଆମ ବନ୍ଧୁତ୍ୱର ସୃଷ୍ଟି ଏବଂ ବିକାଶରେ ଯେ ସହାୟକ ହୋଇନାହିଁ; ଏଇ କେତୋଟି ଦିନ ଭିତରେ ମୁଁ ତାହା ଅତି ନିର୍ଭୁଲ ଭାବରେ ହୃଦୟଙ୍ଗମ କରିଛି । କେବଳ ପରସ୍ପର ସାହିତ୍ୟ ସାଧନା ପ୍ରତି ପରସ୍ପର ଅକୁଣ୍ଠ ହୃଦୟାବେଗ ହିଁ ଆମର ଏ ବନ୍ଧୁତ୍ୱର ସୃଷ୍ଟି, ସ୍ଥିତି ଓ ବିକାଶର କାରଣ ।

ପ୍ରଥମ ସାକ୍ଷାତ ଏବଂ ପରିଚୟରେ ମୁଁ ଆପଣଙ୍କୁ ଜାଣିଥିଲି ଜଣେ ଲେଖକ ଓ କବି ଭାବରେ; କିନ୍ତୁ ଦ୍ୱିତୀୟ ପରିଚୟରେ ମୁଁ

ଜାଣିଲି, ଆପଣ ଏ ଶୋଷଣପିଷ୍ଟ କ୍ଷୁବ୍ଧ ସମାଜର ଜଣେ ଲାଞ୍ଛିତ ସର୍ବହରା. ଘୃଣା, ଅପମାନରେ ଜର୍ଜରିତ ଏକ ବିଗ୍ରହ ଆତ୍ମା ଏବଂ ବିଦ୍ରୋହର ବହ୍ନିରେ ଜ୍ୱଳମାନ ଏକ ଲେଲିହାନ ଶିଖା ।

ମୁଁ ଜାଣିଛି, “ପଥ-ପ୍ରାନ୍ତର କବିତା” ଆପଣଙ୍କର ସେହି ବିଦଗ୍ଧ ଜୀବନର ଅସହାୟ ଯାତ୍ରା-ପଥରେ ଏକ ମର୍ମରିତ କରୁଣ ଆତ୍ମଲିପି । ଏ ଆତ୍ମଲିପି ଖାଲି ଏକ ଜର୍ଜରିତ କବି-ମାନସର ସ୍ୱତଃସ୍ଫୂର୍ତ୍ତ ହୃଦୟାବେଗ ନୁହେଁ; ଏଥିରେ ଏକ ସ୍ୱାର୍ଥଲିପ୍ସୁ ନିଷ୍କରୁଣ ସମାଜର ଶୋଷଣ-ବ୍ୟୂହ ତଳେ ଅଗଣିତ, ଅସହାୟ ‘ଅଭିମନ୍ୟୁ’ଙ୍କ କାତର କଂଠର ବଜ୍ର-ଗମ୍ଭୀର ବାଣୀ ପ୍ରତିଧ୍ୱନିତ । ତେଣୁ ତାହା ଗୋଟିଏ କବି କଂଠରେ କୋଟିଏ ସର୍ବହରା ଜନତାର ବିପ୍ଳବୀ ମର୍ମବାଣୀ । ‘ପଥ-ପ୍ରାନ୍ତର କବିତା’ ବାସ୍ତବିକ ପଥ-ପ୍ରାନ୍ତର କବିତା । ଏଥିରେ ଯିଏ କଳ୍ପନାର ଇନ୍ଦ୍ରଧନୁ ଖୋଜି ଆକାଶର ସପ୍ତବର୍ଣ୍ଣ ସଂଧାନ କରିବାକୁ ଯିବ, ସେ ହତାଶ ହେବ ନିଶ୍ଚୟ !

ରବିବାବୁ ! ସମାଜ ଆପଣଙ୍କୁ ଲାଞ୍ଛିତ, ବଂଚିତ, ଅବହେଳିତ ଏବଂ ବିପର୍ଯ୍ୟସ୍ତ କରିଛି—ବାସ୍ତୁହରା ଏବଂ ସର୍ବହରା କରିଛି । ସେଥିପାଇଁ ମୁଁ ଆନନ୍ଦିତ । କାହିଁକି ଜାଣନ୍ତି ? ଆପଣ ଏ ସମାଜର ଗରଳ ଆକଂଠ ପାନକରି ନୀଳକଂଠ ସାଜି ନ ଥିଲେ ହୁଏତ “ପଥ-ପ୍ରାନ୍ତର କବିତା”ର କବି ହେବାର ଗୌରବ ଲାଭ କରି ପାରି ନ ଥାନ୍ତେ !

ସୃଷ୍ଟିର ଗର୍ଭବେଦନା କେବଳ ସ୍ରଷ୍ଟା ହିଁ ଜାଣେ । ସେ ବେଦନାରେ ଯେଉଁ ଆନନ୍ଦ ନିହିତ, ତାହା କେବଳ ସ୍ରଷ୍ଟା ହିଁ ଅନୁଭବ କରେ । କିନ୍ତୁ ଯେଉଁମାନେ ଅନ୍ୟର ସୃଷ୍ଟିକୁ ନିଜର ବୋଲି କହି ଗର୍ବ ଅନୁଭବ କରନ୍ତି ସେମାନେ ସେହି ଛଳନାର ମାୟାଜାଲ ଭିତରେ କ୍ଷଣିକ ଆତ୍ମତୃପ୍ତି ଲାଭ କରନ୍ତି ସିନା; ସୃଷ୍ଟିର ଚିରନ୍ତନ ଆନନ୍ଦ ସେଥିରେ ନ ଥାଏ । ଆପଣ ଅବିରତ

ଦୁଃଖର ଦାବାଗ୍ନି ଭିତରେ ଜଳି ଜଳି ହୃଦୟର ରକ୍ତ, ନୟନର ଅଶ୍ରୁ ଦେଇ ଯେଉଁ "ପଥ-ପ୍ରାନ୍ତର କବିତା" ସୃଷ୍ଟି କଲେ ଅନ୍ୟ ଆଖିରେ ତାହା ଯେତେ ତୁଚ୍ଛ ହେଲେ ବି ଏହାର ପରିପ୍ରକାଶରେ ଆପଣଙ୍କର ଆନନ୍ଦ ଏବଂ ଗର୍ବ କରିବାର ଯଥେଷ୍ଟ କାରଣ ରହିଛି। ସଂସ୍କୃତରେ ଗୋଟିଏ ଶ୍ଳୋକ ଅଛି :

"କବିତା ରସମାଧୁର୍ଯ୍ୟଂ
କବିର୍ବେତ୍ତି ନ ତତ୍କବିଃ,
ଭବାନୀ ଭ୍ରୂକୁଟୀ ଭଂଗୀ
ଭବୋବେତ୍ତି ନ ଭୂଧରଃ।"

ବାସ୍ତବିକ୍ କବିତାର ରସମାଧୁର୍ଯ୍ୟ ଅନ୍ୟ କବି ହିଁ କେବଳ ଉପଭୋଗ କରିପାରେ। ଆପଣ ସୃଷ୍ଟି କରିବାରେ ହୁଏତ ଆନନ୍ଦ ଲାଭ କରି ପାରିଛନ୍ତି; କିନ୍ତୁ ମୁଁ ତା'ର ରସମାଧୁର୍ଯ୍ୟ ଆସ୍ୱାଦନରେ ବିଶେଷ ମୁଗ୍‌ଧ ଏବଂ ପ୍ରୀତ ହୋଇଛି। ଏହାହିଁ ମୋର ହୃଦୟର ନିହାତି ଅନାସକ୍ତ ଅଭିବ୍ୟକ୍ତି।

ଏ ସମାଜ ବ୍ୟବସ୍ଥାର ଆୟୁ ଆଉ ବେଶୀ ଦିନ ନୁହେଁ। "ପଥ-ପ୍ରାନ୍ତର କବିତା" ତା'ର ଏକ ଆଗ୍ନେୟ ସ୍ମାରକୀ। ପ୍ରିୟ ବନ୍ଧୁ, କାଳର କପୋଳରେ ଆପଣଙ୍କର ଦ୍ୱାରା ଲେଖନୀ ନବ-ଯୁଗର ସଂକେତ ଦେଉ, ଏହାହିଁ କାମନା।

ସୁନହାଟ
ବାଲେଶ୍ୱର
ତା ୧।୯।୧୯୫୯

ଆପଣଙ୍କର ଶୁଭେଚ୍ଛୁ
ଶ୍ରୀ ବ୍ରଜନାଥ ରଥ
ସମ୍ପାଦକ
ଫକୀରମୋହନ ସାହିତ୍ୟ ପରିଷଦ
ବାଲେଶ୍ୱର

ଦରଘା ବଜାର, କଟକ
ଅଗଷ୍ଟ ପନ୍ଦର, ୧୯୫୯
ରାତି ୨ଟା

## ।। ଉଥାପ କହୁରଖେଁ ।।

"ପଥ-ପ୍ରାନ୍ତର କବିତା"ର ଜାତକ ଏକ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଜାତକ । ଏଥିରେ ସ୍ଥାନ ପାଇଥିବା କବିତା ଗୁଡ଼ିକର କାବ୍ୟିକ ମୂଲ୍ୟ ନିରୂପଣ କରିବେ ମୋ ଦେଶର ଅସଂଖ୍ୟ ପାଠକ ଶ୍ରେଣୀ, ତରୁଣ ତଥା ପ୍ରବୀଣ ସମାଲୋଚକବୃନ୍ଦ—ମୁଁ ନୁହେଁ । ତେବେ ଏତିକି ମାତ୍ର କୁହାଯାଇ ପାରେ ଏ କବିତାଗ୍ରନ୍ଥର ପୃଷ୍ଠାଟିମାନ ମୋ' ବ୍ୟକ୍ତିଗତ ପାରିପାର୍ଶ୍ୱିକ ଅବସ୍ଥାର ଗୋଟିଏ ଗୋଟିଏ ବାସ୍ତବ ଆଉ ଜ୍ୱଳନ୍ତ ଚିତ୍ର—ନିଜ ଜୀବନ-ଇତିହାସର ଗୋଟିଏ ଗୋଟିଏ ଅସଲଗ୍ନ ପୃଷ୍ଠା ।

ଜୀବନ-ଯାତ୍ରାର ପଥ ବଡ଼ ଖିଚିପ୍ରଦ...ବନ୍ଧୁର...ଦୁର୍ଗମ... ବିପଦସଂକୁଳ...ସୀମାହୀନ ଓ ଅସରନ୍ତି । ଜୀବନର ପହିଲି ପ୍ରଭାତରୁ ଆରମ୍ଭ କରି ଏପର୍ଯ୍ୟନ୍ତ ସେହି ପଥରେ ଗତି କଲାବେଳେ ଥରେ ଅଧେ ନୁହେଁ; ଶତ ସହସ୍ରବାର ମୋ ଆଖିରେ ପଡ଼ିଛି ଗୋଟାଏ ଆଡ଼େ ସମାଜ ବ୍ୟବସ୍ଥାରୂପୀ ସର୍ବଗ୍ରାସୀ ଶକୁନିର ବଙ୍କ ଚଞ୍ଚୁ ଓ ସୁଦୀର୍ଘ ଶୋଷଣଧର୍ମୀ ଡେଣା—ତା'ର ରକ୍ତ-ପିପାସୁ କର୍ଣ୍ଣଧାରମାନଙ୍କର ଉଦ୍ଦାମ-ଭୋଗତୃଷା ଏବଂ ସେମାନଙ୍କ ଇଙ୍ଗିତରେ ଜ୍ୱଳିତ ତଥାକଥିତ "ଶାସନସଂସ୍ଥା"ର ନରମେଧ ଯଜ୍ଞବେଦୀର ଊର୍ଦ୍ଧ୍ୱଗାମୀ ଧୂମରେଖା । ଅନ୍ୟଆଡ଼େ, ଶତ ସହସ୍ର ନର-

ଦେବତାର ମଂନ୍ଦର ଥବ, ମଂଜ ଦୋହଳ, ପଞ୍ଚବଥବ ଙ୍ଗର୍ଷଶ୍ଯାମ— ସେମାନଙ୍କ ଆତ୍ମାର ବଜଳ ମର୍ମସ୍ପର୍ଶୀ ଚତ୍କାର—ଶୋଷଣ, ଉତ୍ପୀଡନର ରଥଚକ ତଳେ ମଡ଼ ମଡ଼ ଶବଦକର ପ୍ରତମୁହୂର୍ତ୍ତରେ ଚୂର୍ଣ୍ଣିଭୂତ ହେଉଥିବା ସେମାନଂଙ୍କ ନେର୍‌ହାଡ଼ଗା । କନ୍ତୁ ଆଶ୍ଚର୍ଯ୍ୟର କଥା, ତଥାପି ସେମାନେ ସଂଗ୍ରାମଶୀଳ !—ସମସ୍ତ ପ୍ରକାର ପ୍ରତକୂଳ ଅବସ୍ଥାକୁ ଉପହାସ କର ସେମାନେ ଛୁଟିଛଂତ—ଛୁଟିଛଂତ ଜୀବନକୁ ଆକଂଠ ଉପଭୋଗ କରବା ପାଇଁ, ଏକ ନୂତନ-ପୃଥିବୀର ନୂତନ-ସୀମାରେଖା ଦର୍ଶନର ସବୁଜ-ଆକାଙ୍କ୍ଷା ଘେନ । କନ୍ତୁ ସେମାନଂଙ୍କ ପିଛୁଧର ବୁଲୁଛି ମୃତ୍ୟୁ—ଯେଉଁ 'ମୃତ୍ୟୁ' କି ବାସ୍ତବରେ ପ୍ରକୃତ ମୃତ୍ୟୁ ନୁହେଁ; ଗୋଟାଏ ନକଲି ଅକାଳ ମୃତ୍ୟୁ—ମଣିଷ ତିଆରି 'ମୃତ୍ୟୁ' । ଯିଏକ ଛଦ୍ମ ଛଳ ଏବଂ ଦୂରପଥଗାମୀ ସଂଗ୍ରାମରତ ମଣିଷର ଅସତର୍କ ମୁହୂର୍ତ୍ତର ସୁଯୋଗ ନେଇ ହଠାତ୍ ତା ଉପରକୁ ଝାମ୍ପମାରେ, ଚଂଟି ନଶାକର ରକ୍ତ ପିଏ, ତା ପରେ ନଜର ବଳଷ୍ଠ ହାତରେ ବ୍ଲଟିଂ ଆଉକୁ ବସି ଫିଙ୍ଗେ ଗୁଡ଼ାଏ ନସ୍ପନ୍ଦ, ନର୍ଜୀବ, ନର୍ବୋଧୀ ମଣିଷର କଂକାଳ । ଯେଉଁ କଂକାଳମାନେ ବଟ୍ଟୁଡ଼ି ହୋଇ ପଡ଼ିବାର ଦେଖାଯାଏ ସହରର ଫୁଟ୍‌ପାଥ୍ ଉପରେ, ଜନପଦ, ପୁର-ପଲ୍ଲୀର ପଥ-ପ୍ରାନ୍ତରେ । ଆମ ଆଖିରେ ସେମାନେ ରୋଜନା ପଡ଼ନ୍ତ—ସେମାନଂଙ୍କୁ ଆମେ ରୋଜନା ଦେଖୁଁ ଭଭିନ୍ନ ରୂପରେ ଘୂରବୁଲିବାର । କେତେବେଳେ ପାଗଳ ରୂପରେ ବୁଲି ପ୍ରଳାପ କରିବାରେ ତ କେତେବେଳେ ଗ୍ଲ-ଧୂଆଁ ପିଇ, ବେକାର ରୂପ ଧରି ଚାକର ଖୋଜ ବୁଲିବା ଅବସ୍ଥାରେ । କେତେବେଳେ ଭିକାରି, ଭିକାରୁଣୀ ରୂପରେ ଦୈନ୍ୟର କାତର ନବେଦନ ତୋଳି ହାତ ପାତିବାରେ ତ ପଙ୍ଗୁ, ରୋଗଗ୍ରସ୍ତ ଅବସ୍ଥାରେ ମୁଠାଏ ଭାତ ପାଇଁ ସହରର ନର୍ଦ୍ଦମା କଡ଼ରେ କୁକୁରପଲଙ୍କ ସହିତ ସଂଗ୍ରାମରତ ଅବସ୍ଥାରେ । କେତେବେଳେ ନଜର ହକ୍ ଦାବୀ ଲାଗି ଵଡ଼୍ ରାସ୍ତାର ପୂର୍ଯ୍ୟାଲୋକ ତଳେ ଗୁଳିଖାଇ ମରିବା ଅବସ୍ଥାରେ ତ କେତେବେଳେ 'ଚୋର', 'ଡକାୟତ', 'ପକେଟ୍‌ମାରୁ', 'ଖୁନୀ'

ନାମରେ ଅଭିହିତ ହୋଇ କାଗଜରୁ ଥିବା ଅବସ୍ଥାରେ । ସେମାନଙ୍କର ଏପରି ଅବସ୍ଥା ଯେଉଁ କାଠୋଇମାନଙ୍କ ଆଖିରେ ଫୁଟେ ସେମାନଙ୍କ ଭିତରୁ କିଏ ସମବେଦନା ପ୍ରକାଶ କରେ ତ ଗଭୀର ବେଦନାରେ କାହାର ଆଖି ସଜଳ ହୋଇ ଆସେ ! ମୁହିଁ ବୁଲେଇ ନିଜ ବାଟ ଉପରକୁ ପାଦ ବଢ଼େଇବା ଆଗରୁ ହତାଶଭରା କଂଠରେ ଦୀର୍ଘଶ୍ୱାସ ଛାଡ଼ି କହିବା କହନ୍ତିଠେ, "ମଣିଷର ଭାଗ୍ୟ ଇଏ !" କିନ୍ତୁ କେହି ଜାଣି ପାରନ୍ତି ନାହିଁ କେଉଁଠି ଏ ବଭତ୍ସତାର ସୂତ୍ରପାତ—କିଏ ଏ ସବୁର ସ୍ରଷ୍ଟା— କେଉଁଠି ତା'ର ଅବସ୍ଥିତି ।

ଠିକେ ତଳେଇକରି ଦେଖିଲେ ସ୍ପଷ୍ଟ ଦେଖାଯିବ, ଏ ସବୁର ମୂଳଗଣ୍ଠି ହେଉଛି ବର୍ତ୍ତମାନର ପ୍ରଚଳିତ ସମାଜ ବ୍ୟବସ୍ଥା । ଯାହାର ଶାସନ ଚକ୍ରର ଘୂର୍ଣ୍ଣନ କକ୍ଷରେ ଥରେ ପଡ଼ିଲେ ମଣିଷର ବୁଦ୍ଧି-ବୃତ୍ତି ଲୋପପାଏ, ମୁଣ୍ଡରେ ସବାରହୁଏ ସଇତାନ—ନିଜକୁ ନିଜେ ଧ୍ୱଂସ କରିବାକୁ ମଣିଷ ପଶ୍ଚାତ୍‌ପଦ ହୁଏନାହିଁ—ସର୍ବଶେଷରେ କେବଳ ରହିଯାଏ ଚମଡ଼ାଙ୍କା ହାଡ଼ମାଳ । ତାକୁ ମଧ୍ୟ ଖୋଜିବୁଲେ ନିକଳି ଅକାଳ ମୃତ୍ୟୁ—ଯେଉଁ ମୃତ୍ୟୁର ଅବସ୍ଥିତି ଅନ୍ୟ କେଉଁଠି ନୁହେଁ, ଆମରିମାନଙ୍କ ଭିତରେ ! ଆମରିମାନଙ୍କ ମେଳରେ ସେ ପ୍ରାୟ ଘୂରିବୁଲୁଛି ସର୍ବଦା; ଟିକିଏ ଅସତର୍କ ହେଲେ ଜୀବନର ପୂର୍ଣ୍ଣଚ୍ଛେଦ । ଆଜି ଯେଉଁମାନଙ୍କୁ ଆମେ "ଜୀବନ୍ତମଣିଷ" ରୂପରେ ଦେଖୁଛେଁ, ସେମାନଙ୍କର ସେ "ଜୀବନ୍ତମଣିଷ" ଗିରି କେବଳ ଏକ ଗୁରୁତର ଧରଣର ଦୁର୍ଘଟଣା ବଶତଃ ।

ସମାଜ ବ୍ୟବସ୍ଥାରୂପୀ ଏହି 'ମୃତ୍ୟୁ' ବାଲ୍ୟାବସ୍ଥାରୁ ମୋ ପିଛା ଧରିଥିଲା;—ଆଜି ମଧ୍ୟ ଯେ ଧରିନାହିଁ ତା ନୁହେଁ; ବରଂ ବେଳେ ବେଳେ ସେ ତା'ର ବିଭତ୍ସ ଚଳଚ୍ଚିତ୍ରର ନାଲି ପରଦା ଟାଙ୍ଗି ମତେ ବାରଂବାର ନିମନ୍ତ୍ରଣ କରିଛି ତା'ର ଦୃଶ୍ୟ ଦେଖିବାପାଇଁ । କିନ୍ତୁ ସେ ଦୃଶ୍ୟ ଦେଖି ଦେଖି ମୁଁ ଯେ ଅଭ୍ୟସ୍ତ । ଜୀବନ-ବାଟରେ ଜଣେ

ଏକୁଟିଆ ବାଟୋଇ ମୁଁ—ମେଣ୍ଟ 'ବାଟ'ରେ ତା' ସହିତ ମୋର ଚାହାଁ । ସେ 'ଚାହାଁ' ଏକ ମାମୁଲି 'ଚାହାଁ' ନୁହେଁ; ଧମନୀର ରକ୍ତ, ଆଖିର ଲୁହ, ହୃଦୟର କୋହ ବହନମଧ୍ୟର 'ଚାହାଁ' । ଯାହାର ବାସ୍ତବ ପରିଚୟ, ବସ୍ତୁରୂପ ଅଭିବ୍ୟକ୍ତି, ନିର୍ମମତା, ମାତତାର ଜ୍ୱାଳାରେ ସୀଝା ଆଉଟି ହେଲାପରି ଆଉଟି ହୋଇଛି ମୋ ଜୀବନର ସୁରଭିତ ବସନ୍ତ—କାହିଁ କାହିଁ ବୁଲିଛି ଯୌବନାବସ୍ଥାର ସୁନେଲି ଦିନଗୁଡ଼ିକ, ତାର ନିଖୁଣ ଫଟୋଗ୍ରାଫ୍ ଏ କବିତା କେତୋଟି !"
"ତଥାପି ଜୀବନକୁ ପଛକରି ଆମେ ବସି ରହିଥାଉଁ × × ।" ※
ତେଣୁ କେତେବେଳେ, କେଉଁ ରୂପରେ ଯେ ଦୁର୍ଘଟଣା ଘଟିବାକୁ 'ଭାଗ୍ୟ' (?) ରେ ଅଛି, ତା' କହିବା ଅସମ୍ଭବ । "× × ଏଇସବୁ ପାର ହୋଇ ଆମର ଯଦି ପୁଣି ମିଳନ ହୁଏ, କିପରି ହେବ ସେ ଜୀବନ ? ସେଣ୍ଟ ସ୍ୱାଧୀନ ଜୀବନରେ ପୂର୍ତ୍ତି ଦେଖା, ସେଠି ରହିବ ସୃଷ୍ଟିର ସ୍ୱାଧୀନତା × × × ଯେବେ ବା ଆମେ ମରିଥାଉଁ, ଆମେ ବଞ୍ଚଉଠିବୁ ତୁମମାନଙ୍କର ବିପୁଳ ଆନନ୍ଦର ଏକ ବିନ୍ଦୁ ହୋଇ × × ।" †

ଏଇ ଦର୍ଶନକୁ ଭିତ୍ତିକରି ଏ କବିତାଗୁଡ଼ିକର ଜାତକ ଗଠିତ । ଯଦି କେହି ଏଗୁଡ଼ିକୁ ଗୋଟିଏ କ୍ଷତ-ବିକ୍ଷତ ଜୀବନର ସଂଗୀତ ବୋଲି ଧରିନିଅନ୍ତି ତା ହେଲେ ସେମାନେ ମୋ ପ୍ରତି ଅବିଚାର କରିବେ ନାହିଁ ।

ଏ ପୁସ୍ତକ ମୁଦ୍ରଣର ଦୁଃସାହସିକ ଭାର ନେଇ ଯିଏ ମୋର ସଂଚିତ ସ୍ୱପ୍ନକୁ ବାସ୍ତବରୂପ ଦେବାକୁ ଯାଇଛନ୍ତି—ଯାହାଙ୍କ ପାଇଁ ମୋର ପ୍ରଥମ ରଚନା ଦିନେ ଲୋକ-ଲୋଚନ ସମ୍ମୁଖକୁ ଆସିବା ପାଇଁ ସମର୍ଥ ହୋଇଥିଲା ସେହି ଅକୃତ୍ରିମ ବନ୍ଧୁ ପ୍ରକାଶକଙ୍କୁ ମୁଁ ମୋର ଆନ୍ତରିକ କୃତଜ୍ଞତା ଜଣାଇ ରଖୁଛି ।

---

※ ଜୁଲିୟସ୍ ଫୁଚିକ୍, 'ଫାଶୀ ଆସାମୀର ଶେଷ ଚିଠି'ଭୂମିକା—ପୃ : ୯
† ଜୁଲିୟସ୍ ଫୁଚିକ୍, 'ଫାଶୀ ଆସାମୀର ଶେଷ ଚିଠି'—ପୃ : ୭୯

ସାହିତ୍ୟ ପଥ ଏକ ପଥିକ ମାର୍ଗରେ ଯିଏ ମୋର ଏକ ସ୍ପଷ୍ଟ-ସଂକେତ, ଜୀବନର ଦୁର୍ଦ୍ଧର୍ଷଯୁଦ୍ଧରେ କ୍ଷତ-ବିକ୍ଷତ ହେଲାବେଳେ ଯାହାଙ୍କ ସଂସ୍ପର୍ଶ ମୋତେ ଦେଇଥିଲା ଶାନ୍ତ ଓ ଉପଶମର ସ୍ନିଗ୍ଧ ପ୍ରଲେପ—ଯାହାଙ୍କର ନିର୍ଦ୍ଦେଶ ମୋର ଏ ବାଉଣ୍ଡୁଳି, ଯାଯାବର ଜୀବନର ବନ୍ଧୁରପଥରେ ସୃଷ୍ଟି କରିଛି କୋଟି କୋଟି ସୋପାନ— ଏକ ନୂତନ ରଣ-କୌଶଳର ଦୁର୍ଦ୍ଦମନୀୟ ଅଧ୍ୟାୟ; ସେହି ସୁଖ୍ୟାତ ପ୍ରଗତିବାଦୀ କବି, ଲେଖକ, ରାଜନୀତିଜ୍ଞ, ଆଇନଜ୍ଞ ପୂଜ୍ୟପାଦ ଶ୍ରୀ ରଘୁନାଥ ଦାସଙ୍କ ଚରଣ ତଳେ ଆଜିର ଏ ଅବସରରେ ମୋର ଭକ୍ତି-ବିନମ୍ର ପ୍ରଣାମ ଜଣାଇଁ ରଖୁଛି ।

ନବଜୀବନ, ଡଗର, ଆସନ୍ତାକାଲି. ମାତୃଭୂମି, ତରଂଗ, ବାଣୀ, ସ୍ରୋତ ପ୍ରଭୃତି ପତ୍ରପତ୍ରିକାମାନଙ୍କରେ ଏ କବିତାଗୁଡ଼ିକ ପୂର୍ବରୁ ପ୍ରକାଶିତ ହୋଇଥିବାରୁ ତାର ସଂପାଦକମାନଙ୍କୁ ମଧ୍ୟ ମୋର ଶ୍ରଦ୍ଧା ଓ କୃତଜ୍ଞତା ଜଣାଉଛି ।

ଶ୍ରୀ ରବୀନ୍ଦ୍ର ନାଥ ସିଂହ



# ପାଠକ-ପାଠିକାଙ୍କ ଆଖିରେ

## କବି ରବି ସିଂହ ଓ ତାଙ୍କ କାବ୍ୟପୁରୁଷ :

□ସଂଗ୍ରାମ, ସଂଘର୍ଷ ସଂଘାତମୟ ମୋର ପଥ-ପ୍ରାନ୍ତର କବି ଜୀବନରେ "ସ୍ୱୀକୃତି" ବୋଲି ମୁଁ କୌଣସି ସରକାରୀ ସାହିତ୍ୟ-ସଂସ୍ଥାର ମାନପତ୍ର ବା ସାର୍ଟିଫିକେଟ୍‌କୁ ବିଶ୍ୱାସ କରେନାହିଁ । (ସେଭଳି "ସ୍ୱୀକୃତି" ଯେ ମୁଁ ପାଇନାହିଁ, ତାହା ନୁହେଁ । ୧୯୭୫ରେ ସାହିତ୍ୟ ଆକାଡେମୀ ପୁରସ୍କାର, ୧୯୭୮ରେ ସୋଭିଏଟ୍ ଦେଶ ନେହେରୁ ପୁରସ୍କାର ମୁଁ ତ ପାଇ ସାରିଛି !) କିନ୍ତୁ ମୋ ପରି ଜଣେ ପଥପ୍ରାନ୍ତର କବି ପକ୍ଷରେ ଜନ-ଦରବାରର ସ୍ୱୀକୃତିହିଁ ପ୍ରକୃତରେ "ସ୍ୱୀକୃତି" । (ମୋର ସୋଭିଏଟ୍ ଦେଶ ନେହେରୁ ପୁରସ୍କାର ପ୍ରାପ୍ତି ସମ୍ବାଦ ସମ୍ବାଦପତ୍ରରୁ ଜାଣି ଜଣେ କବି ବନ୍ଧୁ ଲେଖିଥିଲେ: "× × ଖବର କାଗଜରୁ ଜାଣିଲି, ଆପଣଙ୍କର ପ୍ରତିଭାର ଏହି ଆନ୍ତର୍ଜାତିକ ସ୍ୱୀକୃତି ଓଡ଼ିଶାରେ ଏକ ନବୀନ ସ୍ପନ୍ଦନ ସୃଷ୍ଟି କରିବ । ଆଶା କରେଁ, ଆପଣ ସବୁଦିନେ ଏହିସବୁ ମାନପତ୍ର ଊର୍ଦ୍ଧ୍ୱରେ ରହିବେ, ଯେପରି ଅପଖ୍ୟାତିର ହେତୁପାରୁ ରହି ଆସିଛନ୍ତି । × ×")

□ମୋର କବି ଜୀବନର ପ୍ରାରମ୍ଭରୁ ଏଯାବତ୍ ମୋ କବିତାର ମାନବିକ-ଆବେଦନ ଗଣ-ଦରବାରରେ କିଭଳି ଆଦୃତ ହୋଇଛି, ଗଣଦରବାର ମୋ କାବ୍ୟପୁରୁଷକୁ ସନ୍ତାନ ପରି ଶ୍ରଦ୍ଧା କରେ କି ନା ତାହା ଜାଣିବା ପାଇଁ ମୁଁ ସର୍ବଦା ଶିଶୁ ପରି ଲାଳସୀ ଥିଲି ଓ ଥିବି । ଓଡ଼ିଶାର ପୁରପଲ୍ଲୀର ଜଣା-ଅଜଣା ସ୍ଥାନରୁ ବିଭିନ୍ନ ସମୟରେ ଚିହ୍ନା-ଅଚିହ୍ନା ପାଠକ-ପାଠିକା-କୁଳ ତାଙ୍କର ଆଶୀର୍ବାଦ, ଦରଦ, ଶୁଭେଚ୍ଛା-ବାରି ମୋ ଉପରେ ବର୍ଷଣ କରିଛନ୍ତି ସହସ୍ର ସହସ୍ର ଚିଠି ଦ୍ୱାରା । ତାହାହିଁ ପ୍ରକୃତରେ ମୋର ମହାର୍ଘ ମାନପତ୍ର । ଏକାଡେମୀ ପୁରସ୍କାର, ସୋଭିଏଟ୍ ଦେଶ ନେହେରୁ ପୁରସ୍କାର ତଥା ଅନ୍ୟାନ୍ୟ ଆନୁଷ୍ଠାନିକ ସାହିତ୍ୟିକ-ସ୍ୱୀକୃତିଠାରୁ ତାହା ଢେର୍ ମୂଲ୍ୟବାନ । ସେଥିପାଇଁ ପାଠକ ଦରବାର ମୋର "ଈଶ୍ୱର"ଠାରୁ ବଳି ଉପାସ୍ୟ ଏବଂ ପୂଜ୍ୟ । ସେହି ଗଣଦରବାରର ଅସଂଖ୍ୟ ମାନପତ୍ର (ଚିଠି) ଭିତରୁ କେତୋଟି ମାନପତ୍ରକୁ ଏଠାରେ ଉଦ୍ଧୃତ କରୁଛି ।

ରବୀନ୍ଦ୍ରନାଥ ସିଂହ

## ॥ ଚିଠିପତ୍ର ॥

ଗ୍ରୀଣ୍‌ହାଟ ଗୌଡ଼ସାହି,
ଅଶେଷ ପ୍ରୀତିଭାଜନେଷୁ        କଟକ-୧—୬।୮।୫ ଗୁରୁବାର

ରବିବାବୁ !.

ଗତ ସନ୍ଧ୍ୟାରେ A. I. R. ରୁ ଆପଣଙ୍କ 'ଅବାଂଛିତ' ପଦ୍ୟାବୃତ୍ତି ମୋତେ ବଡ଼ ଅଭିଭୂତ କରିପକାଇଲା—ଆଗରୁ ତ ଶୁଣିଥିଲି। ଭାବିଲି, ଏ ଲେଖକ ବାର୍ଦ୍ଧକ୍ୟର ଦୁର୍ବଳତା। ନିଖିଳ ବିଶ୍ୱର କେତେ ପ୍ରହ୍ଲାଦ ଏପରି ଲୁଣିକା ଓ ଅସ୍ତ୍ରାଘାତରେ ରକ୍ତାକ୍ତ ହୋଇ ଆମ୍ଭମାନଙ୍କ ଦର୍ଶନ ଭିକ୍ଷା କରୁଛନ୍ତି। ଏ ଦୁର୍ବଳ ଲେଖକକୁ ମାରି ସେଇ ହିରଣ୍ୟକଶିପୁ ଗୋଷ୍ଠୀକୁ ଲୁଣିକାଘାତ କରିବାକୁ ହେବ। ଭୁଲ୍ କରୁଛି ହରି—ସେମାନେ ସମସ୍ତେ କ୍ଷମଣୀୟ। ନ ହେଲେ ଆପଣ ବଡ଼ ହେବେ କିପରି ? ଆପଣ ପ୍ରହ୍ଲାଦଙ୍କ ପରି ଅସ୍ତ୍ରାଘାତ ସହି ଅଛନ୍ତି—ପରମ ଭାଗ୍ୟବାନ—ରବି ସିଂ ଜଗତ୍‌ସିଂହପୁରର ସାମାନ୍ୟ ଗ୍ରାମ୍ୟବାଳକ ନୁହନ୍ତି। ସେ ସଦାହାସ୍ୟମୟ କୈଶବଙ୍କର ପାଞ୍ଚଜନ୍ୟ ନିର୍ଘୋଷ—ଅଗାମୀ ମହାଭାରତର ଅଗ୍ରଦୂତ। ସେ'ତ ସାମାନ୍ୟ ନୁହେ। ତାଙ୍କୁ ନ ହେଲେ ନଟବର ଏପର୍ଯ୍ୟନ୍ତ ରଂଗମଂଚରେ ସ୍ଥାପନା କରି ନ ଥାନ୍ତେ। ସେଇ କୁଟୀରର ନିମ୍ବଗଛ ମୂଳେ ଠିଆ ହୋଇ ନିତି ନିତି ବଂଶୀଲହରି ବଜାଇ ଯାଉଛନ୍ତି, ନ ଶୁଣୁଥିଲେ କଲମ ଚଳନ୍ତା ନାହିଁ। ଏ ରକ୍ତାକ୍ତ କ୍ଷତବିକ୍ଷତ ବପୁକୁ ସେ ଆସି ପୋଛୁ ଦେଉଛନ୍ତି। ବଡ଼ ଭାଗ୍ୟବାନ ଆପଣ। ସେ ଧ୍ୱନି ଆପଣଙ୍କ ମଧ୍ୟରେ ଅଧିକ ବଳିଷ୍ଠ ଓ ସୁମଧୁର ହୋଇ ଉଠିବ। ଏ ବିଶ୍ୱାସ ମୋର ଅଛି। ପ୍ରଭୁ ଆପଣଙ୍କୁ ପରମାୟୁ ଦିଅନ୍ତୁ।

ପିଲମାନଂକୁ ବିଶେଷତଃ ବୋହୂକୁ ମୋର ଆନ୍ତରିକ ଆଶୀର୍ବାଦ ଜଣାଇ ଦେବ। ଅଖି ଖଣ୍ଡି ତ ଏକାବେଳକେ ଲୋପ ହେବା ଉପରେ, ସାହସ କରି ବାହାରିବ କିନେ।

ଶୁଭାକାଂକ୍ଷୀ
ବୈକୁଣ୍ଠନାଥ ପଟ୍ଟନାୟକ
★ ପଥପ୍ରାନ୍ତର କବିତା

( ଜାତୀୟ କବି ବୀରକିଶୋର ଦାସ )

ତା ୧୨।୧୧।୭୦

ଭାଇ ରବୀନ୍ଦ୍ର,

ଭୁବନେଶ୍ୱର

ବର୍ଷକରୁ ଊର୍ଦ୍ଧ୍ୱ ହୋଇଗଲା ତୁମର ମୋର ସାକ୍ଷାତ ନାହିଁ ବା କଥାବାର୍ତ୍ତା ନାହିଁ । ଲେଖା ଲେଖି ଜରିଆରେ ମଧ୍ୟ ଦେଖାଦେଖି ହୋଇନାହିଁ । × ×

ତୁମ ପିତାଙ୍କ ସହ ମୋ ପିତାଙ୍କର ଯେଉଁ ସୌହାର୍ଦ୍ଦ୍ୟ, ତା ମୁଁ ମନରୁ ପାଶୋରି ଦେଇ ନାହିଁ । କାଳକ୍ରମେ ତମର-ମୋର ସମ୍ବନ୍ଧ ତମେ ବଢ଼ାଇ ଦେଇଛ ।

ଯୁଦ୍ଧଯୁଗରେ ତମ କଂଠରେ ମୋର ଲିଖିତ ଗୀତ ଗୁଡ଼ିକ ବହୁଲୋକଙ୍କୁ ଉନ୍ମାଦନା ଦେଉଥିଲା । ବାଗ୍‌ଦେବୀଙ୍କ କୃପାରୁ ଶତ ଝଡ଼ଝଞ୍ଜା ଭିତରେ ଦେଇ ଯେପରି ଆଗେଇ ଚାଲିଛ ତା ମୋତେ ବିସ୍ମୟ ଲାଗେ । ତମେ ନିଜେ ନିଜର ଗୁରୁ ହୋଇ କବି ଆସନରେ ନିଜକୁ ପ୍ରତିଷ୍ଠା କରି ପାରିଛ ତା ବଡ଼ ଆନନ୍ଦର ବିଷୟ । ମୁଁ ପ୍ରାୟ ୧୪ ମାସ ହେଲା କଟକରୁ ବିଦାୟ ନେଇ ଆସିଛି । ଦେହ ବିସତେ ଭଲ ରହୁନାହିଁ । କେବଳ ମଫସଲ ବୁଲୁଛି । ତମର ସହଧର୍ମିଣୀଙ୍କୁ ମୋର ସ୍ନେହ ସମ୍ଭାଷଣ ଜଣାଇ ଦେବ ।

ତମର ଶୁଭକାଂକ୍ଷୀ
ବୀରକିଶୋର

●●●

ବୁର୍ଦ୍ଧା
ଖସ୍ମା-ରେମଣ୍ଡା (ସମ୍ବଲପୁର)
ତା ୨୭।୪।୭୦

ଆଜ୍ଞା,

ଦୂରସ୍ଥାନରୁ ଏକ ଅଜଣା ଲୋକର ହାର୍ଦ୍ଦିକ ନମସ୍କାର ନେବେ । ଆପଣଙ୍କର କେତେକ କବିତା ବହି ପାଠ କରି ଅତିଶୟ

★ ପଥପ୍ରାନ୍ତର କବିତା

ଆନନ୍ଦିତ ହେଲି । କେତେକ କବିତା ପାଠ କଲେ ହୃଦୟର କେଉଁ ସ୍ଥାନରେ ଝଂକୃତ ହେଲାପରି ମନେ ହୁଏ । × × ଆପଣଙ୍କର ସୁନାମର ପ୍ରସାର ଅଧିକ ଅଧିକ ହେବା ଜାଣି ବିଶେଷ ଖୁସି ।

ରବି ସିଂଙ୍କ ଜୟ ହେଉ । ସାହିତ୍ୟ କ୍ଷେତ୍ରରେ ରବି ସିଂ ଯୁଗ ହେଉ ।

ଆପଣଙ୍କର ଜଣେ ପ୍ରଶଂସା ଗାୟକ

ରଙ୍କ

[ ରଙ୍କମଣି ଦାସ, ଶିକ୍ଷକ ]

●●●

Koshal Sahitya Samaj
Budharaja, Sambalpur
ତା ୨୭।୧୦।୭୯

ମାନନୀୟେଷୁ,

ନମସ୍କାର ନେବେ । ବାସ୍ତବିକ ଆପଣ ଦରଦୀ କବି । ସମାଜର ଏହି ଅନ୍ୟାୟ, ଅତ୍ୟାଚାର, ପ୍ରବଂଚନା, ଅନ୍ଧବିଶ୍ୱାସ ତଥା ଏଇ ଜରଦ୍‌ଗବ ମାନଂକର ମୂଳୋତ୍ପାଟନ ପାଇଁ ସତତ ଜାଗ୍ରତ । ଆପଣ ଜନତାର ଅନ୍ୟତମ ଜାଗ୍ରତ ପ୍ରହରୀ । ଆପଣ ନିଜେ ତିଳ ତିଳ ହୋଇ ବି ଜନତାର ସେବା, ସାହିତ୍ୟର ପ୍ରଭୂତ ବକ୍ରୀରଣହିଁ ଆପଣଙ୍କର ଧର୍ମ । ସୂର୍ଯ୍ୟର ତେଜ ନେଇ ଲେଖନୀସ୍ରୋତ ପ୍ରବାହିତ ହେଉଛି ଏବଂ ସିଂହର ବିକ୍ରମ ନେଇ ଏକ ସ୍ୱତନ୍ତ୍ର ପ୍ରତିଷ୍ଠା ପାଉଛି । 'ରବି' ଓ 'ସିଂହ' ଦୁଇ ବଳିଷ୍ଠ ଶବ୍ଦ । ଏହାହିଁ ଆପଣଙ୍କ ଜୀବନର ସାର୍ଥକ ସ୍ୱପ୍ନ । କିଏ କହେ ଆପଣ ନିଃସ୍ୱ ଓ ରୁଗ୍‌ଣ ? ଆପଣ ତ ଧନ-ମାନ-ଯଶ ପଛରେ ଗୋଡ଼ାଇ ନାହାନ୍ତି ! ଆପଣ ସମାଜର ନିଖୁଣ ଚିତ୍ର ଆଙ୍କି ସାରସ୍ୱତ-ବୀଣାରେ ବାଦନ ପୂର୍ବକ ଯେଉଁ ସଂଗୀତର ସ୍ରୋତ ଛୁଟାଇଛନ୍ତି ତାହା ଶାଶ୍ୱତଃ । କ୍ଷମା ଦେବେ ତ୍ରୁଟି ପାଇଁ । ଆପଣଙ୍କର, ପିଲାମାନଙ୍କର ସୁସ୍ୱାସ୍ଥ୍ୟ କାମନା କରି ରହିଲି ।

ଆପଣଙ୍କର ସ୍ନେହାଧୀନ

ହାଡ଼ିବନ୍ଧୁ ମିର୍ଦ୍ଧା

●●●

ମୁଗପାଳ
ତା ୬ । ୭ । ୭°

ଶ୍ରଦ୍ଧେୟ ରବିବାବୁ

ଶୁଭେଚ୍ଛା ଗ୍ରହଣ କରିବେ । × × × ଆପଣଙ୍କ ଜୀବନୀ ପଢ଼ି ବହୁତ ଦୁଃଖ ଲାଗିବା ସଙ୍ଗେ ସଙ୍ଗେ ଗର୍ବ ଓ ଆସିଲା । ଗୋଟିଏ ଐତିହାସିକ ବଂଶ ଆପଣଙ୍କର । ସାହଙ୍ଗ, ବହୁ ଲୋକଙ୍କ ସହାନୁଭୂତି ଆପଣଙ୍କର ପଥର ପାଥେୟ ହେଉ । ଆଶାକରେ ସପରିବାରେ କୁଶଳରେ ଥିବେ । × × । ଇତି

ଆପଣଙ୍କର ଅଚିହ୍ନା ଭଉଣୀ
ଶ୍ରୀମତୀ ଶୈଳବାଳା ପତି

●●●

କୁମାର ପୂର୍ଣ୍ଣିମୀ
ତା ୨୫।୧୦।୭୯

ପୂଜ୍ୟାସ୍ପଦ ଦାଦା,—

ସହରରୁ ଆନ୍ତରିକ ପ୍ରଣତି ନେବେ । ଭାଉଜଙ୍କୁ ମୋର ବନ୍ଦନା ପ୍ରଣତି ତଥା ବୃତ୍ତୀ, ଚନ୍ଦ୍ରଜିତଙ୍କୁ ମୋର ସସ୍ନେହ ଆଶୀର୍ବାଦ । × × କହିବାକୁ ଗଲେ ଆପଣ ପ୍ରକୃତରେ ଈର୍ଷାଳର ଜବ । × × ଯେଉଁ-ମାନେ ପରଶ୍ରୀକାତରତା, ଈର୍ଷାପରତା ବଶତଃ ଚିତ୍ତାସ୍ପୃ ଶ୍ରେଣୀର ସଂଘର୍ଷ ଘଟାଉଛନ୍ତି –ସେମାନଙ୍କ ମସ୍ତିଷ୍କ ବିକୃତି ପାଇଁ ସ୍ୱତଃ ଦୟା ଲାଗେ । ଅତୀତରେ ମହାମନୀଷୀମାନଙ୍କୁ ଏହିଭଳି ଲାଂଛନା, ଅପମାନ ସହ୍ୟ କରିବାକୁ ପଡ଼ିଛି—ସେମାନଙ୍କ ସୃଷ୍ଟି ଓ ପ୍ରତିଭା ପାଇଁ । ଅତୀତରେ ଜଗନ୍ନାଥଦାସଙ୍କୁ ଏଥିପାଇଁ କମ୍ ଲାଂଛନା ସହ୍ୟ କରିବାକୁ ପଡ଼ିନାହିଁ । ଏପରିକି ତାଂକ ରଚିତ 'ଭାଗବତ'କୁ ସ୍ମାର୍ତ୍ତଧର୍ମୀ ସଂସ୍କୃତଜ୍ଞ ବ୍ରାହ୍ମଣଗୋଷ୍ଠୀ "ତେଲି ଭାଗବତ" ବୋଲି ଆଖ୍ୟା ଦେଇଥିଲେ । କିନ୍ତୁ ପାଉଁଶ ତଳେ ନିଆଁ କ'ଣ କେବେ ହେଲେ ଲୁଚି ରହିପାରେ ? ତାଂକର ସୃଷ୍ଟି ଅଜି ପ୍ରତି ଘରେ ଘରେ

ଧର୍ମଗ୍ରନ୍ଥ ରୂପେ ବବେଚତ ଏବଂ ସର୍ବଜନ ମନୋଗ୍ରାହ୍ୟ ହୋଇ ଯାଇଛ । ଯାନକୃଷ୍ଣ ମଧ୍ୟ ରାଜକର୍ତ୍ତୃକ ବନ୍ଦୀତ ହୋଇଥିଲେ— ଯେହେତୁ ସେ ରାଜାଂକ ଉଦ୍ଦେଶ୍ୟରେ ସ୍ତୁତି ବା ଭଣିତା ରଚନା କର ପାରନଥିଲେ । ତେଣୁ ସେ ଦୃଷ୍ଟିରୁ ଗଣଯୁଗର ଯୁଗସ୍ରଷ୍ଟାଙ୍କୁ ଯେ ଅର୍ନ୍ତଧାନ ନୈଛନା ସହ୍ୟ କରବାକୁ ପଡୁଛ ଏବଂ ପଡ଼ବ ତାହା ନିଃସଂଦେହ × ×

× × ଭ୍ରମ କିପର ଅଛନ୍ତି ?

ରହଲ — । ଇତି ।

ଶ୍ରଦ୍ଧେୟା

କୁନ

[କନକଲତା ସିଂହ]

• • •

ସୁନହଟ-ବାଲେଶ୍ୱର
ତା ୨୦।୨।୫୯

ପ୍ରିୟ ରବିବାବୁ,

ନମସ୍ତେ । ଚିଠି ପାଇଲି । ଜୀବନକୁ ଆଉ କେତେଦନ ଏହି-ଭଳି ରାଜପଥ ଉପରକୁ ଛୁଟିଦେଇ ଲକ୍ଷ ଲକ୍ଷ ଜନତାର ପଦା-ଘାତରେ ନୂଆ ନୂଆ ଅନୁଭୂତିର ସ୍ପର୍ଶ ଲାଭ କରପାରବେ କହଲେ ? ଅବଶ୍ୟ ଏ ଜୀବନ କ୍ୱଚିତ୍ ଦେଖାଯାଏ । ଏଭଳି ଦୁଃଖରେ ମଧ୍ୟ ବଂଚରହ ସୃଷ୍ଟିଶୀଳ ହେବାରେ ଆନନ୍ଦ ଅଛି । କିନ୍ତୁ କେତେଜଣ ସେଭଳି ଆନନ୍ଦର ପ୍ରୟାସୀ କହଲେ ? "ସୁଖେର ଘରେ ଶଯ୍ୟା ପେଲେ, ଶୂନ୍ୟହାତେ ଆସ୍‌ବେ କେ ?" ନହାତି ଦରଦ୍ର ଗୃହୀଟିର ମଧ୍ୟ ଭଙ୍ଗା ଖଟ ଥାଏ । କିନ୍ତୁ ଆପଣଙ୍କର ତାହା ବ ଯେ ନାହିଁ । ତଥାପି ଆପଣ ନଜରୁଲ୍‌ଙ୍କ ଭଳି ବଦ୍ରୋହୀ କବଙ୍କ ଭାଷାରେ "ଚର ଉନ୍ନତ ଶିର ।" ଏହାହିଁ ଆଶ୍ଚର୍ଯ୍ୟ ! ମୃତ୍ୟୁକୁ ଭୟ କରୁଛନ୍ତି ? ମୃତ୍ୟୁ ବୋଧହୁଏ ଆପଣଙ୍କୁ ଭୟ କରୁଛି । ନ ହେଲେ ଏତେଦନ ବ ବଂଚରହ ପାର ନ ଥାନ୍ତେ । ଚନ୍ତା ନାହିଁ—"ପୂର୍ବରେ ହେବ ସୂର୍ଯ୍ୟୋଦୟ ।"

ବାସ୍ତବିକ ଆପଣଙ୍କ ଭଳି ଜଣେ ବନ୍ଧୁ ପାଇ ମୁଁ ଅନେକଥା ଦୃଢ଼ ହୋଇ ପାରିଛି । କେତେ ରହିବାର ସାହସ ସଂଚୟ କରି ପାରିଛି । ×× ଆଜି ଟ ୫୯ ପଠାଇଲି । ଚିଠି ଦେବେ । କୁଶଳ କାମନା କରି ରହିଲି ।

ଆପଣଙ୍କର ...
ଶ୍ରୀ ବ୍ରଜ... ର

●●●

ବେଲପାହାଡ଼
ସମ୍ବଲପୁର (ଓଡ଼ିଶା)

ପୂଜନୀୟ ରବିଭାଇନା,

ପ୍ରଣାମ ନେବେ । ହଠାତ୍ ଜଣେ ଅପରିଚିତର ଚିଠିପାଇ ଆଶ୍ଚର୍ଯ୍ୟ ହୋଇ ଯାଇଥିବେ, ତା ଛଡ଼ା 'ଭାଇନା' ସମ୍ବୋଧନ ଦେଖି ମଧ୍ୟ । ××

ମୁଁ ଆପଣଙ୍କୁ ଭକ୍ତି କରେ, ଭକ୍ତି କରେ ସବହରା ଲେଖକ ହିସାବରେ, ଭକ୍ତି କରେ ଏକ ଅବିସ୍ମରଣୀୟ ବ୍ୟକ୍ତିତ୍ୱ ହିସାବରେ । ଆଜି ଓଡ଼ିଆ ସାହିତ୍ୟର ଗତି ଓ ପ୍ରକୃତି ଦେଖି ଆପଣଙ୍କୁ ଭକ୍ତି କରିବାକୁ ଇଚ୍ଛା ହୁଏ ।

ମୁଁ ଆପଣଙ୍କୁ ଭକ୍ତି କରେ "ଧର୍ଷଣ"ର ରଚୟିତା ହିସାବରେ ନୁହେଁ, "ଗୁଞ୍ଜୁଣିମୂଠା"ର ମୁଖ୍ୟ ସଂପାଦକ ହିସାବରେ ନୁହେଁ, ଭକ୍ତିକରେ ସବହରାର ଏକାନ୍ତ ନିଜର ଲୋକ ହିସାବରେ, ସବହରାର ଲେଖକ-କବି-ସାହିତ୍ୟିକ ହିସାବରେ ।

×× ସଂପ୍ରତି "ବେଲା"ରେ ଆପଣଂକର ଆତ୍ମଜୀବନୀର କିୟଦଂଶ ପଢ଼ିଲି । ପଢ଼ି ଆଖିରେ ଲୁହ ଆସିଗଲା । ଧନ୍ୟ ଆପଣ ଧନ୍ୟ ଆପଣଙ୍କ ଜୀବନ । ଆପଣ ସର୍ବହରା ଲେଖକ ହିସାବରେ ଚିରଦିନ ପରିଚିତ ଥା'ନ୍ତୁ । ଭବିଷ୍ୟତ ଆପଣଙ୍କର ମୂଲ୍ୟାୟନ କରିବ । ଚିଠିଦେବେ । ଚିଠିର ଆଶାରେ ରହିଲି । ଇତି ।

ଆପଣଙ୍କର
ଜଗଦୀଶ ମହାନ୍ତି

●●●

ସୁନହଟ, ବାଲେଶ୍ୱର
ତା ୧୩।୨।୫୯
ରାତ୍ରି-୯ଟା

ପ୍ରିୟ ରବିବାବୁ,

[illegible] ଆଜ Press ରେ ଆପଣଙ୍କ ଆବେଗପୂର୍ଣ୍ଣ ଚି[illegible] ଆନନ୍ଦିତ ହେଲି। କେଉଁ ଏକ ଶୁଭ ମୁହୂର୍ତ୍ତରେ କେଜାଣି ଆମେ ଦୁହେଁ ବନ୍ଧୁତା ସୂତ୍ରରେ ଆବଦ୍ଧ ହୋଇଥିଲେ, ଯେଉଁଥି ପାଇଁକି ଆଜ ଆମେ ଏତେ ନିକଟତର ହୋଇ ପାରିଛେଁ। ଆପଣ ଯେ ମୋ ଭଳି ଏକ ବନ୍ଧୁ ଆଗରେ ନିଜର ସଂଗ୍ରାମୀ ଜୀବନର ବହୁ କରୁଣ କାହାଣୀ କହିପାରୁଛନ୍ତି ଏବଂ ମୁଁ ଯେ ଆପଣଙ୍କୁ ମୋର ହୃଦୟର ଗଭୀର ସହାନୁଭୂତି ଟିକିଏ ହେଲେବି ଜଣାଇ ପାରୁଛି ଏହାହିଁ ତ ଏ କୁତଘ୍ନ ସମାଜରେ ‘ବନ୍ଧୁତା’। ଏ ପୃଥିବୀରେ ଯେତେଦିନ ଯାଏଁ ବଂଚି ରହିଛୁଁ ସେତେଦିନ ଯାଏଁ ନିଜର ସ୍ୱାଧୀନ ମତ ବ୍ୟକ୍ତ କରିବାର ଅଧିକାର ଟିକକ, ବହୁ ବାଧାବିଘ୍ନ ସତ୍ତ୍ୱେ ରଖି ପାରିଲେହିଁ ଆମର ଜୀବନ ସାର୍ଥକ ହେଲା ବୋଲି ଆମେ ଭାବି ପାରିବୁଁ। ସେ ହିସାବରେ ଆପଣ ତ ଜଣେ ‘ଅଗ୍ରପଥିକ’ ଆଉ ମୁଁ ବି ଜଣେ ପଥିକ। ଏ ସମସ୍ତ ଦୁଃଖ ଭିତରେ ତାହାହିଁ ଆନନ୍ଦ। ଦୁଃଖକୁ ଦୁଃଖ ବୋଲି ଭାବିବାରେହିଁ ଦୁଃଖର ଆଧିକ୍ୟ। ତେଣୁ ସେଥିପାଇଁ ଚିନ୍ତା କରିବାଟା ଅନୁଚିତ।

ରମାବାବୁ (ଫଗୁ ବିନନ୍ଦ)ଙ୍କୁ ମୋର ପ୍ରଣାମ ଜଣାଇ ଦେବେ। ସେ'ବି ଆମଭଳି ଏକ ଅପଦାର୍ଥ (?) ମୋର ବିବାହ ତାରିଖ ଏପର୍ଯ୍ୟନ୍ତ ଠିକ୍ ହୋଇନାହିଁ। ହେଲେ ଜଣାଇବି। ପରେ ଅନ୍ୟାନ୍ୟ। କୁଶଳ କାମନା କରେ—

ଆପଣଙ୍କର
ଶ୍ରୀ ବ୍ରଜନାଥ ରଥ

●●●